# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଗୋପବନ୍ଧୁ

ଡକ୍ଟର ସୌରୀବଂଧୁ କର

ବିଂଶ ଶତାବ୍ଦୀର ପ୍ରାରମ୍ଭ ଓଡ଼ିଶା ପାଇଁ ଗୁରୁତ୍ୱପୂର୍ଣ୍ଣ। ଏହି ସମୟରେ ଆରମ୍ଭ ହୋଇଥିଲା ଓଡ଼ିଆ ଭାଷାଭାଷୀ ଆନ୍ଦୋଳନ ଓ ଏହାକୁ କେନ୍ଦ୍ରକରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ। ଓଡ଼ିଆ ଭାଷାର ସୁରକ୍ଷାରୁ ଓଡ଼ିଆ ଭାଷା ଆନ୍ଦୋଳନର ଉତ୍ପତ୍ତି ହେଲା। ଏଥିରୁ ପରବର୍ତ୍ତୀ ସମୟରେ ଓଡ଼ିଆ ଜାତୀୟତାବାଦ ଜନ୍ମଲାଭ କଲା ଓ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାର ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନର ପ୍ରଶ୍ନ ଉଠିଲା।



୧୮୬୬ ନଅଙ୍କ ଦୁର୍ଭିକ୍ଷ ପରେ ପରେ ଦେଖାଦେଇଛି ଓଡ଼ିଆ ଜାତୀୟ ଚେତନା। ଓଡ଼ିଶା ପ୍ରତି ବ୍ରିଟିଶ ସରକାରଙ୍କର ଚରମ ଅବହେଳା, କତିପୟ ବଙ୍ଗୀୟ ଓଡ଼ିଶା ଓ ଓଡ଼ିଆ ସଂସ୍କୃତି ପ୍ରତି ତାସଲ୍ୟ ଓ ବୈରଭାବ ଏବଂ ତତ୍କାଳୀନ ବଂଗୀୟ ରାଜକର୍ମଚାରୀ ଓ ଜମିଦାରମାନଙ୍କର ଓଡ଼ିଆମାନଙ୍କ ଉପରେ ଅତ୍ୟାଚାର ପ୍ରଭୃତି ବିଷୟକୁ ନେଇ ଓଡ଼ିଆ ଭାଷା ଆନ୍ଦୋଳନର ହୋଇଛି ସୂତ୍ରପାତ।

କ୍ରମେ ଓଡ଼ିଆ ଜାତୀୟ ଚେତନା ଯେତିକି ଯେତିକି ବଢ଼ିଛି, ସେତିକି ସେତିକି ଓଡ଼ିଆ ଭାଷା, ସାହିତ୍ୟ ଚର୍ଚ୍ଚା ଓ ଅନ୍ୟ ଦିଗରେ ଓଡ଼ିଆ ଭାଷାର ବିଲୋପ ପାଇଁ ମଧ୍ୟ ଆନ୍ଦୋଳନ ତେଜି ଉଠିଛି। ଓଡ଼ିଶାର ସ୍କୁଲମାନଙ୍କରେ ବଙ୍ଗଳାଭାଷା ଚଳାଇବାର ଯେଉଁ ପ୍ରଚେଷ୍ଟା ହୋଇଥିଲା, ତାହା ୧୮୬୯-୭୦ ବର୍ଷ ଦୁଇଟିରେ ଅତି ଉଗ୍ରରୂପ ଧାରଣ କରିଥିଲା। ଶେଷରେ ଓଡ଼ିଆ ଭାଷା ଚକ୍ରାନ୍ତକାରୀଙ୍କ କବଳରୁ ମୁକ୍ତିଲାଭ ପୂର୍ବକ ପୁନର୍ଜୀବନ ଲାଭ କଲା।

ଏସବୁ ସତ୍ତ୍ୱେ ୧୯୩୬ ମସିହା ପର୍ଯ୍ୟନ୍ତ ବିଭିନ୍ନ ରାଜନୈତିକ ଝଡ଼ଝଞ୍ଜା ମଧ୍ୟରେ ଓଡ଼ିଆ ଜାତିକୁ ଗତି କରିବାକୁ ପଡ଼ିଥିଲା। ଉତ୍କଳଗୌରବ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁ ଏହି ଦୁଇ ବଳିଷ୍ଠ ଜାତୀୟନେତାଙ୍କ ନେତୃତ୍ୱରେ ଓଡ଼ିଶାର ଜାତୀୟ ଚେତନା ଉଦ୍ଦୀପିତ ହେଲା। ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଥିଲା ଏଇ ଦୁଇ ଜାତୀୟ ନେତାଙ୍କ ଜୀବନର ଲକ୍ଷ୍ୟ।

ଉତ୍କଳମଣି ଗୋପବନ୍ଧୁଙ୍କ ତରୁଣ ହୃଦୟରେ ଦେଶାତ୍ମବୋଧ, ଉତ୍କଳୀୟ ଜାତୀୟତାବୋଧର ବୀଜ ବପନ କରିଥିଲେ ମୁକ୍ତିଆର ଶ୍ରୀ ରାମଚନ୍ଦ୍ର ଦାସ। ୧୯୧୨ ମସିହାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ଗଞ୍ଜାମ ଜିଲ୍ଲା ସମ୍ମିଳନୀରେ ଯୋଗଦେଇ ମୁକ୍ତିଆର ରାମଚନ୍ଦ୍ର ଦାସ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସବୁ ଲୋକଙ୍କୁ ନେଇ ମଧୁବାବୁଙ୍କ ନେତୃତ୍ୱରେ ଏକ ସମ୍ମିଳନୀ ଗଠନର ପ୍ରସ୍ତାବ ଦେଲେ। ରମ୍ଭା ସମ୍ମିଳନୀରେ ସେହିବର୍ଷ ରାମଚନ୍ଦ୍ର ଦାସଙ୍କ ସହିତ ଗୋପବନ୍ଧୁ

ଯୋଗ ଦେଇଥିଲେ । ଗୋପବନ୍ଧୁ ସେତେବେଳେ ଥିଲେ ରେଭେନ୍ସା କଲେଜର ଛାତ୍ର । ୧୯୦୩ ମସିହାରେ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ଗୋପବନ୍ଧୁ କେତେକ ବନ୍ଧୁଙ୍କ ସହିତ ସ୍ୱେଚ୍ଛାସେବକ ରୂପେ ଯୋଗ ଦେଇଥିଲେ । ଏହି ସମ୍ମିଳନୀଠାରୁ ଆରମ୍ଭ ହେଲା ମଧୁବାବୁ ଓ ଗୋପବନ୍ଧୁଙ୍କର ଘନିଷ୍ଠ ସଂପର୍କ ଓ ସହଯୋଗର ଅଧ୍ୟାୟ । ସେମାନଙ୍କ ଉଦ୍ଦେଶ୍ୟ ଥିଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ, ଓଡ଼ିଆ ଜାତିର ସଂହତି ଓ ସମୃଦ୍ଧି । ଉତ୍କଳୀୟ ଜାତୀୟତାବାଦକୁ ଦୃଢ଼ୀଭୂତ କରିବାରେ ଉତ୍କଳ ସମ୍ମିଳନୀରେ ଗୋପବନ୍ଧୁ ଉଦ୍ୟମ କରିଥିଲେ । ୧୯୦୪ ମସିହାରେ କଟକଠାରେ ଉତ୍କଳ ସମ୍ମିଳନୀରେ ଗୋପବନ୍ଧୁ ତାଙ୍କର କେତେକ ବଙ୍ଗୀୟ ବନ୍ଧୁଙ୍କୁ ନେଇ ଯୋଗଦେଇଥିଲେ । ମଧୁବାବୁ ବଙ୍ଗୀୟ ଯୁବକମାନଙ୍କୁ ଏଥିରେ ଯୋଗ ଦେବାକୁ କୁଣ୍ଠା ପ୍ରକାଶ କରିବା ସତ୍ତ୍ୱେ ଗୋପବନ୍ଧୁ ତାଙ୍କୁ ବୁଝାଇ ପାରିଥିଲେ । ଗୋପବନ୍ଧୁଙ୍କ ଯୁକ୍ତି ଥିଲା ଯେ ଉତ୍କଳବାସୀଙ୍କର ଦାବି ପ୍ରତି ଭାରତର ବିଭିନ୍ନ ଅଞ୍ଚଳର ଅଧିବାସୀମାନଙ୍କର ସହାନୁଭୂତି ଆବଶ୍ୟକ । ତରୁଣ ଗୋପବନ୍ଧୁଙ୍କର ଚିନ୍ତାଧାରାରେ ଥିଲା ସ୍ୱାତନ୍ତ୍ର୍ୟତା ଓ ସେ ସାହସର ସହିତ ନିଜର ମତବ୍ୟକ୍ତ କରୁଥିଲେ ।

୧୯୧୮ ମସିହାରେ ଉତ୍କଳ ସମ୍ମିଳନୀର କଟକ ଅଧିବେଶନରେ ଯୋଗ ଦେଇ ସମ୍ମିଳନୀର ଶିଥିଳତା ହେତୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବିକୁ ବ୍ରିଟିଶ ସରକାର ଉପେକ୍ଷା କରୁଛି ବୋଲି ଦୁଃଖ ପ୍ରକାଶ କରି ସମ୍ମିଳନୀକୁ କେବଳ ଶିକ୍ଷିତ ଶ୍ରେଣୀ ମଧ୍ୟରେ ସୀମାବଦ୍ଧ ନକରି ଏହାକୁ ଏକ ବ୍ୟାପକ ଗଣ ଆନ୍ଦୋଳନରେ ପରିଣତ କରିବାକୁ ଗୋପବନ୍ଧୁ ମତ ଦେଇଥିଲେ । ସେ ଦୃଢ଼ ଭାବରେ ଘୋଷଣା କରିଥିଲେ ଏ ସରକାର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଉ, ଏହି ଦାବିକୁ ଗ୍ରହଣ କରୁ ବା ନିଜେ ଭାଙ୍ଗିଯାଉ । ଯଦି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ନ ହୁଏ, ତେବେ ଏ ସରକାର ସହିତ ମୋର ଆଜୀବନ ଆଉ କୌଣସି ସମ୍ପର୍କ ରହିବ ନାହିଁ । ଅବଶେଷରେ ମର୍ମସ୍ପର୍ଶୀ ଭାଷାରେ ଅଶ୍ରୁ ବିଗଳିତ ନୟନରେ କାତର କଣ୍ଠରେ କହିଥିଲେ, 'ମୁଁ ଆଉ ଅଧିକ କ'ଣ କରିପାରିବି । ମୋ ଛିନ୍ନମସ୍ତା ଉତ୍କଳଜନନୀ ପାଖରେ ନିଜକୁ ମୁଁ ଆଜି ଏଥିପାଇଁ ଉତ୍ସର୍ଗ କରୁଛି । ମା', ଯଦି ଏ ଜୀବନରେ ତୋର ସୁନ୍ଦର ଶ୍ରୀବଦନ ଦେଖିପାରିବି ନାହିଁ, ତା'ହେଲେ ତୋର ଛିନ୍ନମସ୍ତା କଦାକାର ରୂପ ହିଁ ପୂଜା କରିବି ।' ତା'ପରବର୍ଷ ୧୯୧୯ ମସିହା ଏପ୍ରିଲ ମାସରେ କଟକଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ସଭାପତି ରୂପେ ତାଙ୍କର ବକ୍ତୃତା ଥିଲା ଅତ୍ୟନ୍ତ ପ୍ରାଣସ୍ପର୍ଶୀ । ସେଥିରେ ସେ ଉତ୍କଳ ସମ୍ମିଳନୀର ଏକ ଅପୂର୍ବ ବର୍ଣ୍ଣନା ଦେଇଥିଲେ । ଏମନ୍ତ କି ବର୍ତ୍ତମାନ ଓଡ଼ିଆ ଜାତିର ଆବାଳ ବୃଦ୍ଧ ବନିତା ସମସ୍ତ ଜୀବିତ ବ୍ୟକ୍ତିଙ୍କର କେବଳ ଏ ସମ୍ମିଳନୀ ନୁହେଁ, ଅଦ୍ୟାପି ଯେଉଁମାନେ ଜନ୍ମ ହୋଇନାହାନ୍ତି, ଶତଶତ ବର୍ଷ ପରେ ଯେଉଁମାନେ ଉତ୍ତରାଧିକାରୀ ହେବେ, ସେମାନଙ୍କର ମଧ୍ୟ ଏହି ସମ୍ମିଳନୀ । ଓଡ଼ିଆ ଜାତିର ଏହା ନିରବଚ୍ଛିନ୍ନ ପ୍ରାଣ ପ୍ରବାହ । ଓଡ଼ିଆ ଜାତିର ଅକ୍ଷୁଣ୍ଣତା ଉପରେ ଆସ୍ଥା ପ୍ରକାଶ କରି କହିଥିଲେ, 'ଖଣ୍ଡ ବିଖଣ୍ଡିତ ହେଲେ ସୁଦ୍ଧା ଓଡ଼ିଆ ଜାତି ବର୍ତ୍ତମାନ ବିଦ୍ୟମାନ ରହିଛି । ରାଜନୈତିକ ବିଚ୍ଛେଦ ତାହାର ବାହ୍ୟ କଳେବରର ବି ଭଙ୍ଗ ଘଟାଇଛି ମାତ୍ର, କିନ୍ତୁ ଜାତୀୟ ଆତ୍ମା ଅଦ୍ୟାପି ଅକ୍ଷୁଣ୍ଣ । ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ଏହି ଅବିନଶ୍ୱର ଆତ୍ମାର ଇନ୍ଦ୍ରିୟଗ୍ରାହ୍ୟ ମୂର୍ତ୍ତି, ସୁତରାଂ ଆମ୍ଭମାନଙ୍କ ଜାତୀୟ ଆକାଂକ୍ଷାର ପ୍ରକାଶକ । ସେ ପ୍ରତିନିଧିମାନଙ୍କୁ ଆହ୍ୱାନ କରି କହିଥିଲେ, ଉତ୍କଳମାତା ପ୍ରତ୍ୟେକ ସନ୍ତାନଠାରୁ ତାଙ୍କ କର୍ତ୍ତବ୍ୟ ଆଶା କରନ୍ତି ।' ଓଡ଼ିଆ ଭାଷାର ଗୁରୁତ୍ୱ ବୁଝାଇ କହିଲେ, ଓଡ଼ିଆ ଭାଷା ଉପରେ ଆମ୍ଭମାନଙ୍କ ଜାତୀୟ ସତ୍ତା ନିର୍ଭର କରେ ।

୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ଗୋପବନ୍ଧୁ ଯୋଗ ଦେଇ ଭାଷା ସୂତ୍ରରେ ପ୍ରଦେଶ ଗଠନ ଦାବି ଉପସ୍ଥାପିତ କରିଥିଲେ ସେହି ପ୍ରସ୍ତାବ ଗୃହୀତ ହୋଇଥିଲା । ୧୯୨୦ ଡିସେମ୍ବର ୩୦ ତାରିଖ ଦିନ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଗୋଟିଏ ଅଧିବେଶନ ଅନୁଷ୍ଠିତ ହେଲା । ଭାରତୀୟ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନ ଶେଷ ହେବାର ଅବ୍ୟବହିତ ପରେ ଏହା ଅନୁଷ୍ଠିତ ହୋଇଥିଲା । ଗୋପବନ୍ଧୁଙ୍କ ଦ୍ୱାରା ଆଗତ ଓ ଚନ୍ଦ୍ରଶେଖର ବେହେରାଙ୍କ ସମର୍ଥନରେ ଏହା ଗୃହୀତ

ହୋଇଥିଲା । ଏହି ସଭା ପ୍ରସ୍ତାବ କରୁଛି ଯେ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ମଧ୍ୟ ସମ୍ମିଳନୀ ଲକ୍ଷ୍ୟ ହେଉ ।' ଅନ୍ୟ ଏକ ପ୍ରସ୍ତାବରେ ଭାଷାଭିତ୍ତିକ ପ୍ରଦେଶ ଗଠନରେ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବକୁ ସମ୍ମିଳନୀ ସର୍ବାନ୍ତଃକରଣରେ ସମର୍ଥନ କରୁଛି ।

ଉତ୍କଳ ସମ୍ମିଳନୀକୁ ଏକ ବୈପ୍ଳବିକ ଆଭିମୁଖ୍ୟ ଦେବା ଓ ଜାତୀୟ ପ୍ରବାହରେ ଉତ୍କଳକୁ ସାମିଲ କରିବା ଥିଲା ଗୋପବନ୍ଧୁଙ୍କର ଉଦ୍ଦେଶ୍ୟ । ଉତ୍କଳୀୟ ଜାତୀୟତାବାଦ ଓ ଭାରତୀୟ ଜାତୀୟତାବାଦ କିପରି ପରସ୍ପର ବିରୋଧୀ ନୁହେଁ ବରଂ ପରସ୍ପର ସାପେକ୍ଷ ତାହା ପ୍ରତିପାଦନ କରି ଉତ୍କଳର ସମୂହ ଉନ୍ନତି ଦୃଷ୍ଟିରୁ ଜାତୀୟ ରାଜନୈତିକ ପ୍ରବାହରେ ମିଶିଯିବା ଆବଶ୍ୟକ ବୋଲି ସେ ବୁଝାଇଥିଲେ । ଓଡ଼ିଶା ଭାଷାଭାଷୀ ସମସ୍ତ ଅଞ୍ଚଳର ଏକତ୍ରୀକରଣ, ଏକ ଶାସନାଧୀନକରଣ କଂଗ୍ରେସର ସାହାଯ୍ୟ ଓ ସମର୍ଥନରେ ଅଧିକ ସହଜ ହେବ ବୋଲି ସେ ମନେ କରୁଥିଲେ । ସେ ବ୍ୟବସ୍ଥାପକ ସଭାର ସଭ୍ୟ ଥାଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଦାବି ଉପସ୍ଥାପିତ କରିଥିଲେ । କିନ୍ତୁ ସେହି ଚେଷ୍ଟାରେ ସଫଳ ହୋଇ ପାରିନଥିଲେ ।

ଗୋପବନ୍ଧୁଙ୍କ ଦେହାବସାନ ଘଟିଲା ୧୯୨୮ ମସିହାରେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କଲା ୧୯୩୬ ମସିହାରେ । କିନ୍ତୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରୁ ବିଚ୍ଛିନ୍ନ ହୋଇ ରହିଗଲା ସିଂହଭୂମି, ଷଢ଼େଇକଳା, ଖରସୁଆଁ, ମଞ୍ଜୁଷା ଇତ୍ୟାଦି । ଗୋପବନ୍ଧୁଙ୍କର ଦୃଢ଼ ଓ ସ୍ପଷ୍ଟ ମତ ଥିଲା ଯେ ପ୍ରାଦେଶିକ ସ୍ୱାର୍ଥ ଜାତୀୟ ସ୍ୱାର୍ଥର ପରିପୂରକ । ଗୋପବନ୍ଧୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କଂଗ୍ରେସ ଜାତୀୟ ଆନ୍ଦୋଳନ କାର୍ଯ୍ୟ ଭିତରେ ଆନ୍ତରିକତାର ସହିତ ଦେଶମିଶ୍ରଣ କାର୍ଯ୍ୟ ମଧ୍ୟ ଅବ୍ୟାହତ ରଖିଥିଲେ । ଭାଷାଭିତ୍ତିକ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ଓଡ଼ିଶା ଭାଷା ପ୍ରତିଷ୍ଠା ପାଇଲା, ଏଯାବତ୍ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳ ଓଡ଼ିଶା ସହିତ ମିଶିନାହିଁ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଶହେ ପନ୍ଦର ବର୍ଷ କାଳ ଓଡ଼ିଆ ଜାତିକୁ ଆନ୍ଦୋଳନ କରିବାକୁ ପଡିଥିଲା । ଏଥିପାଇଁ କେତେକେତେ ଓଡ଼ିଆ ଭାଷାପ୍ରେମୀ, ଓଡ଼ିଆ ଜାତି ପ୍ରେମୀ ବରେଣ୍ୟ ଦେଶସେବକ ନିଃସ୍ୱାର୍ଥପର କଠିନ ସେବା କରିଯାଇଛନ୍ତି, ତାହା ଯେପରି ଆମେ ଭୁଲିଗଲୁଣି । କିନ୍ତୁ ଏତିକି ସାନ୍ତ୍ୱନା ଯେ ଆମେ ଗୋପବନ୍ଧୁଙ୍କୁ ମନେ ରଖିଛୁ କିନ୍ତୁ ତାଙ୍କର ତ୍ୟାଗ, ନିଃସ୍ୱାର୍ଥପର ଦେଶସେବା, ଭାଷା, ଜାତି ଓ ରାଷ୍ଟ୍ର ଗଠନରେ ଭୂମିକାକୁ ଭୁଲିଯାଉଛୁ ଏବଂ ରାଜ୍ୟର ସ୍ୱାର୍ଥପାଇଁ ବ୍ୟାପକ ଗଣ ଆନ୍ଦୋଳନ ଗଢ଼ି ତୋଳିବାରେ ଅସମର୍ଥ ହୋଇଯାଇଛୁ । ଗୋପବନ୍ଧୁଙ୍କ ଭାଷାରେ, 'ଜାତୀୟତାର ଲକ୍ଷ୍ୟ ଯେ ଉଦାର ମାନବିକତା, ସମଗ୍ର ଭାରତରେ ତାହା ଓଡ଼ିଆ ହିଁ ବୁଝିଥିଲେ । ଓଡ଼ିଆର ଏ ଜାତୀୟତା, ଦେଶାନୁରାଗ କେବେ ଜଡ଼, ନିର୍ଜୀବ, ନିରସ ଓ ସ୍ୱାର୍ଥ ପ୍ରଣୋଦିତ ନୁହେଁ ।' ଏହି ବିଚାରକୁ ଧରିରଖି ଓଡ଼ିଆ ଜାତି ଆଗକୁ ଅଗ୍ରସର ହେଲେ ତାହା ହେବ ଗୋପବନ୍ଧୁଙ୍କ ପାଇଁ ଯଥୋଚିତ ସମ୍ମାନ ।

ଗଜପତି ନଗର
ଭୁବନେଶ୍ୱର-୭୫୧୦୦୫



# ରାଜତନ୍ତ୍ରଠାରୁ ଗଣତନ୍ତ୍ର ଯାଏଁ ...

**ଅମିନୀଲୁ ରାୟ**

ଅତୀତର ରାଜତନ୍ତ୍ର ଶାସନ କାଳରେ ଶାସକ ରାଜାମାନଙ୍କର ଏକ ପ୍ରଧାନ ଅଭିପ୍ରାୟ ଥିଲା ରାଜ୍ୟ ଜୟ ଓ ସାମ୍ରାଜ୍ୟ ବିସ୍ତାର । ମାତ୍ର ବହୁ କ୍ଷେତ୍ରରେ ନଦୀ, ନାଳ, ଗିରି, ସମୁଦ୍ର ଇତ୍ୟାଦି ପ୍ରାକୃତିକ ପ୍ରତିବନ୍ଧକ ତା'ର ଗତିରୋଧ କରୁଥିଲା । ତେଣୁ ଆଲେକ୍‌ଜାଣ୍ଡାର ଓ ନେପୋଲିୟନ୍‌ଙ୍କ ପରି ବୀରମାନେ ବିଶ୍ୱ ବିଜୟୀ ହେବାର କଳ୍ପନାରେ ସଫଳକାମୀ ହୋଇପାରି ନଥିଲେ । ମନୁଷ୍ୟର ଏହି ଆତ୍ମ-ସମ୍ପ୍ରସାରଣବାଦୀ ମନୋଭାବ ଯୁଗେ ଯୁଗେ ଧରାବକ୍ଷକୁ ନର ରକ୍ତରେ ରଞ୍ଜିତ କରିଛି । ଯୁଦ୍ଧ ଓ ରାଜ୍ୟ ଜୟ ହୋଇଛି ମାନବ ସମାଜର ବହୁ ଦୁଃଖ ଓ ଦୁର୍ଦ୍ଦିନର କାରଣ ।

କିନ୍ତୁ ଆଧୁନିକ ଯୁଗରେ ଜ୍ଞାନ ବିଜ୍ଞାନର ପ୍ରସାର ଫଳରେ ପୃଥିବୀର ପରିଧି କ୍ରମେ ସଙ୍କୁଚିତ ହୋଇଯାଇଛି । ସମଗ୍ର ବିଶ୍ୱର ଛବି ମନୁଷ୍ୟର ନଖ ଦର୍ପଣରେ ପ୍ରତିଫଳିତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୋଟିଏ ପାର୍ଶ୍ୱରେ ଥାଇ ହସ୍ତ ପ୍ରସାରଣ କଲେ ତାହା ପୃଥିବୀର ଅପର ପାର୍ଶ୍ୱକୁ ସ୍ପର୍ଶ କରିଯିବାର ଦକ୍ଷତା ମନୁଷ୍ୟ ହାସଲ କରିଅଛି । ତେଣୁ ଅତୀତର ସେହି ବିଶ୍ୱ ବିଜୟୀ ହେବାର ସ୍ୱପ୍ନ ଆଧୁନିକ ଯୁଗର ମନୁଷ୍ୟକୁ ବିଭୋର କରିଛି । ଧନଶାଳୀ, ଶକ୍ତିଶାଳୀ ଓ ବୃହତ୍ ରାଷ୍ଟ୍ରର ନେତୃବର୍ଗ ପ୍ରତି ମୁହୂର୍ତ୍ତରେ ଆକାଶ କୁସୁମ ତୋଳୁଛନ୍ତି । ଅତ୍ୟାଧୁନିକ ଯୋଗାଯୋଗ ବ୍ୟବସ୍ଥା, ଗମନାଗମନରେ ସୁବିଧା, ମହାକାଶ ଯାତ୍ରାର ସୁଗମତା ସର୍ବୋପରି ଆକ୍ରମଣ ଓ ପ୍ରତି ଆକ୍ରମଣ ନିମନ୍ତେ ଭୟଙ୍କର ଶକ୍ତି ସଂଗ୍ରହ ତାହାର ଆଶାକୁ ଅଧିକ ବଳବତ୍ତର କରିଛି । ରାଜତନ୍ତ୍ର ବା ବ୍ୟକ୍ତିତନ୍ତ୍ର ସ୍ଥାନରେ ପୃଥିବୀର ବିଭିନ୍ନ ଦେଶରେ ଗଣତନ୍ତ୍ରର ବିକାଶ ହେବା ଫଳରେ ଅତୀତର ସାମ୍ରାଜ୍ୟ ବିସ୍ତାରର ପରିକଳ୍ପନା ଆଜି ଅବଶ୍ୟ ଅପ୍ରାସଙ୍ଗିକ ହୋଇପଡିଛି, ତଥାପି ପୃଥିବୀରେ ଆପଣାର ପ୍ରାଧାନ୍ୟ ବିସ୍ତାର କରି ନିଜର କ୍ଷମତା ଓ ଐଶ୍ୱର୍ଯ୍ୟରେ ଅନ୍ୟମାନଙ୍କର ଚକ୍ଷୁ ଝଲସାଇ ଦେବା ପାଇଁ ଚାଲିଛି ପ୍ରତିଯୋଗିତା । ଏହି ପ୍ରତିଯୋଗିତାକୁ ଅଧିକ ତୀବ୍ରତର କରିଛି ଆଧୁନିକ ବିଜ୍ଞାନ । ସେଥିପାଇଁ ପୃଥିବୀ ଅହରହ ଏକ ଶୀତଳ ଯୁଦ୍ଧ ମଧ୍ୟ ଦେଇ ଗତି କରୁଛି ।

ଆଧୁନିକ ବିଜ୍ଞାନର ବିକାଶ ହୋଇ ନଥିଲେ ହୁଏତ ବିଗତ ଶତକର ପ୍ରଥମାର୍ଦ୍ଧରେ ମାତ୍ର ୨୦ ବର୍ଷର ବ୍ୟବଧାନରେ ଦୁଇ ଦୁଇଟା ବିଶ୍ୱ ଯୁଦ୍ଧ ଘଟି ଯାଇ ନଥାନ୍ତା । ପୁଣି ଶତାବ୍ଦୀର ମଧ୍ୟ ଭାଗରେ ଶକ୍ତିଶାଳୀ ଓ ବିତ୍ତଶାଳୀ ରାଷ୍ଟ୍ର ଆମେରିକା ହଜାର ହଜାର ମାଇଲ୍ ଦୂରରୁ ଭିଏତ୍‌ନାମ୍ ସହିତ ଦୀର୍ଘକାଳ ଧରି ସଂଗ୍ରାମ ଜାରି ରଖି ନଥାନ୍ତା । ଗତ ଶତାବ୍ଦୀର ନବମ ଦଶକରେ ଇରାକ ବିରୋଧରେ ମିତ୍ରଶକ୍ତିମାନଙ୍କର ମିଳିତ ସଂଗ୍ରାମର ଭୟାବହତା ପାଇଁ ଆଧୁନିକ ବିଜ୍ଞାନ ହିଁ ଦାୟୀ ବୋଲି ଅସ୍ୱୀକାର କରି ହେବ ନାହିଁ । ଦ୍ୱିତୀୟ ମହାଯୁଦ୍ଧରେ ହୀରୋସୀମା ଓ ନାଗାସାକି ଉପରେ ଆମେରିକା ପରମାଣୁ ବୋମା ନିକ୍ଷେପ କରିବା ଫଳରେ ଧ୍ୱଂସର ଯେଉଁ ମହାତାଣ୍ଡବ ସୃଷ୍ଟି ହେଲା, ସେଥିପାଇଁ ବିଜ୍ଞାନ ବ୍ୟତୀତ ଆଉ କାହାକୁ ବା ଦାୟୀ କରାଯିବ ? କଲ୍ୟାଣରୂପୀ ବିଜ୍ଞାନକୁ ଆଜି ମରଣମୟ କରିବା ଦିଗରେ ସ୍ୱୟଂ ବୈଜ୍ଞାନିକମାନେ ଦାୟୀ ନୁହନ୍ତି । ଦାୟୀ ନୁହନ୍ତି ସେମାନେ, ଯେଉଁମାନେ କି ସ୍ୱ ତପସ୍ୟା ଓ ସାଧନା ବଳରେ ପ୍ରକୃତ ରହସ୍ୟକୁ ଉନ୍ମୋଚନ କରି ବିଜ୍ଞାନର ମହାମୂଲ୍ୟ ତତ୍ତ୍ୱ ଓ ତଥ୍ୟଗୁଡିକ ମାନବ ସମାଜ ହାତରେ ଧରାଇଦେଇ

ଯାଇଛନ୍ତି । ଏ ଦିଗରେ କେବଳ ଦାୟୀ କରାଯିବ ପୃଥିବୀର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ । ପୃଥିବୀର ଜଟିଳ ରାଜନୀତିକ ଘନଘଟା ମଧ୍ୟରେ ସେଇମାନେ ହିଁ ନିଜର ସ୍ୱାର୍ଥ ଉଦ୍ଦେଶ୍ୟରେ ବିଜ୍ଞାନକୁ ବ୍ୟବହାର କରି ମନୁଷ୍ୟର ଜୀବନକୁ ଦୁର୍ବିସହ କରିପକାଇଛନ୍ତି ।

ରାଜତନ୍ତ୍ର ଶାସନଠାରୁ ଆରମ୍ଭ କରି ଆଧୁନିକ ଯୁଗର ଗଣତନ୍ତ୍ର ଶାସନ ପର୍ଯ୍ୟନ୍ତ ଯେକୌଣସି ରାଷ୍ଟ୍ର ପକ୍ଷେ ପ୍ରତିରକ୍ଷା ହେଉଛି ସବୁଠାରୁ ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର । କାରଣ ଏହି ପ୍ରତିରକ୍ଷା ଉଦ୍ଦେଶ୍ୟରେ ବିପୁଳ ଅର୍ଥ ବ୍ୟୟ କରିବାକୁ ପଡିଥାଏ । ଯହୁଁ ଯହୁଁ ଅତ୍ୟାଧୁନିକ ରଣ କୌଶଳ ସହିତ ବିଭିନ୍ନ ପ୍ରକାରର ଦୂରଗାମୀ ମାରଣାସ୍ତ୍ରମାନ ଆବିଷ୍କୃତ ହେଉଛି, ତହୁଁ ତହୁଁ ବ୍ୟୟ ବି ବଢି ବଢି ଯାଉଛି । ଯୁଦ୍ଧ ନିମନ୍ତେ ଆଜି ଆଉ ଗୁଳିଗୋଳା ବନ୍ଧୁକ ଯଥେଷ୍ଟ ନୁହେଁ । ଆଜି ଆଉ ସମ୍ମୁଖ ସଂଗ୍ରାମର ମଧ୍ୟ ପ୍ରୟୋଜନ ନାହିଁ । ଦୂରଗାମୀ କ୍ଷେପଣାସ୍ତ୍ରମାନ ଉଦ୍ଭାବିତ ହେବା ଫଳରେ ବସ୍ତୁତଃ ସମ୍ମୁଖ ସଂଗ୍ରାମ ଅନାବଶ୍ୟକ ହୋଇପଡିଛି । କୃତ୍ରିମ ଉପଗ୍ରହକୁ ପ୍ରତିରକ୍ଷା କାର୍ଯ୍ୟରେ ବ୍ୟବହାର କରାଯାଉଥିବାର ଏକ ଗୁରୁତର ଅଭିଯୋଗ ବହୁଦିନରୁ କୁପରମାଣୁ କାର୍ଯ୍ୟକଳାପ ଏବଂ ତତ୍‌ସହିତ ଦେଶର ବନ୍ଧବାଡ, କଳକାରଖାନା ଓ ନଦୀନାଳର ନକ୍ସା ସହଜରେ ହସ୍ତଗତ ହୋଇପାରୁଛି । ସେଥିପାଇଁ ମହାକାଶରେ ଅସ୍ତ୍ର ପରୀକ୍ଷାକୁ ପ୍ରତିରକ୍ଷା ଉଦ୍ଦେଶ୍ୟରେ ବ୍ୟବହାର ନକରିବାକୁ ଦାବି ହେଉଛି । ପରିସ୍ଥିତି ଓ ଆବଶ୍ୟକତାକୁ ଚାହିଁ ଭାରତ ମଧ୍ୟ ପ୍ରତିରକ୍ଷା ପ୍ରସ୍ତୁତିରେ ପଶ୍ଚାତ୍‌ଗାମୀ ହୋଇନାହିଁ । ଭାରତ ମଧ୍ୟ ପରମାଣୁ ଶକ୍ତିର ଅଧିକାରୀ ଓ ଅଗ୍ନି, ନାଗ, ପୃଥ୍ୱୀ, ତ୍ରିଶୂଳ ଇତ୍ୟାଦି କେତେକ ଦୂରଗାମୀ କ୍ଷେପଣାସ୍ତ୍ର ନିର୍ମାଣ କରିବାରେ ସଫଳ ହୋଇଛି । ଏଭଳି ସାଫଲ୍ୟରେ ଅନ୍ୟ ଦେଶମାନେ ଯେତେ ବିବ୍ରତ ନୁହନ୍ତି, ତତୋଧିକ ବିବ୍ରତ ହେଉଛନ୍ତି ରାଜନୀତିକ ନେତୃବୃନ୍ଦ । କାରଣ ବୈଜ୍ଞାନିକ ସାଧନଗୁଡିକ ସଂପ୍ରତି ରାଜନୀତିକ ନେତାମାନଙ୍କ ଦ୍ୱାରା ହିଁ ନିୟନ୍ତ୍ରିତ ହେଉଛି । ଗବେଷଣାଗାର ମଧ୍ୟରୁ ବାହାରି ଯିବା ପରେ ତାହାର ନିୟନ୍ତ୍ରଣ ଅଧିକାର ରାଷ୍ଟ୍ର ହାତରେ ହିଁ ନ୍ୟସ୍ତ ହେଉଛି । ପରମାଣୁର ସନ୍ଧାନ ଯିଏ ପ୍ରଥମ କରି ବିଶ୍ୱକୁ ପ୍ରଦାନ କରିଥିଲେ, ସେମାନେ ତାହା କେବେ ରାଜନୀତିକ ପ୍ରରୋଚନା ବା ରାଷ୍ଟ୍ରୀୟ ନିର୍ଦ୍ଦେଶରେ କରିନଥିଲେ । ସେମାନେ ତାହା ସ୍ୱାଧୀନ ଭାବରେ ସମ୍ପାଦନ କରି ମାନବ ସମାଜ ହସ୍ତରେ ଅର୍ପଣ କରିଥିଲେ, ମାତ୍ର ତାହା ଆଜି ଦେଶର ରାଜନୀତିକ ଇଚ୍ଛା ଏବଂ ଆବଶ୍ୟକତାର ଅଧୀନ ଅଟେ ।

ଅଧୁନା ବିଶ୍ୱ ରାଜନୀତିରେ ସବୁଠାରୁ ଜଟିଳତା ସୃଷ୍ଟି କରିଛି ପରମାଣୁ କାର୍ଯ୍ୟକ୍ରମ । କାରଣ ଏହାର ଧ୍ୱଂସକାରୀ ଶକ୍ତି କେବଳ ଅକଳ୍ପନୀୟ ନୁହେଁ, ଅବର୍ଣ୍ଣନୀୟ ମଧ୍ୟ । ସେଥିପାଇଁ ପରମାଣୁ ଶକ୍ତିର ଅଧିକାରୀ ରାଷ୍ଟ୍ରମାନେ ଅନ୍ୟମାନଙ୍କ ପ୍ରତି ଆତଙ୍କର କାରଣ ହୋଇଛନ୍ତି । ପରସ୍ପର ମଧ୍ୟରେ ସନ୍ଦେହ, ସତର୍କତା, ଈର୍ଷା, ଦ୍ୱେଷ ଓ ଅସହନଶୀଳତା ପ୍ରତିଦିନ ବଢି ବଢି ଯାଉଛି । ଏହାରି ଯୋଗୁଁ ପୃଥିବୀର ଶକ୍ତି ବିପନ୍ନ ହେବାରେ ଲାଗିସଛି । ଲୋକମାନେ ଆଶଙ୍କା କରୁଛନ୍ତି – ଯଦି କେବେ ୩ୟ ବିଶ୍ୱଯୁଦ୍ଧ ଘଟେ, ତେବେ ତାହା ହିଁ ହେବ ପୃଥିବୀର ଶେଷ ବିଶ୍ୱଯୁଦ୍ଧ । ବର୍ତ୍ତମାନ ପୃଥିବୀରେ ଯେତେ ପରମାଣୁ ବୋମା ଗଚ୍ଛିତ ଅଛି, ତାହା ପୃଥିବୀକୁ ଥରେ ନୁହେଁ, ଏକଶତବାର ଧ୍ୱଂସ କରିପାରିବ । ଋଷ, ଆମେରିକା, ଫ୍ରାନ୍‌ସ, ବ୍ରିଟେନ୍, ଭାରତ, ପାକିସ୍ତାନ, ଚୀନ୍ ଓ କୋରିଆ ପ୍ରଭୃତି ରାଷ୍ଟ୍ର ଏବେ ପରମାଣୁ ଶକ୍ତିର ଅଧିକାରୀ ।

ବିଜ୍ଞାନର ଅନିୟନ୍ତ୍ରିତ ବ୍ୟବହାର ବହୁ ସମସ୍ୟା ବା ସଙ୍କଟ ସୃଷ୍ଟି କରିବ । ସେଥିପାଇଁ ବୈଜ୍ଞାନିକ ସାଧନଗୁଡିକ ଉପରେ ରାଷ୍ଟ୍ରୀୟ ନିୟନ୍ତ୍ରଣ ରହିବା ଏକାନ୍ତ ଆବଶ୍ୟକ । ମାତ୍ର ଏଥିରେ ବେଳେବେଳେ ସଙ୍କୀର୍ଣ୍ଣ ରାଜନୀତିକ ଦୃଷ୍ଟିଭଙ୍ଗୀ ହିଁ ମୂଳ ଉଦ୍ଦେଶ୍ୟକୁ ବିଘ୍ନିତ କରିଥାଏ । ରାଷ୍ଟ୍ରୀୟ ନିୟନ୍ତ୍ରଣର ଅର୍ଥ ରାଜନୀତିକ ନିୟନ୍ତ୍ରଣ ନୁହେଁ । ରାଜନୀତିକ ସ୍ୱାର୍ଥ ଉଦ୍ଦେଶ୍ୟରେ ବିଜ୍ଞାନକୁ ବ୍ୟବହାର କରାଗଲେ ତାହାର ଅପବ୍ୟବହାର ହେଲା ବୋଲି ବୁଝିବାକୁ ହେବ ।

ଜଗତ୍‌ସିଂହପୁର

# ଭଗବାନ ନର-ନାରାୟଣଙ୍କ ତପସ୍ୟା ଓ ବରଦାନ

ସୁଚିତ୍ରା ବେହେରା

ସୃଷ୍ଟିର ଆରମ୍ଭରୁ ଭଗବାନ ବ୍ରହ୍ମା ନିଜ ମନରୁ ମରିଚୀ, ଅତ୍ରି, ଅଙ୍ଗିରା, ପୁଲସ୍ତ, ପୁଲହ, କୃତୁ, ଭୃଗୁ, ବଶିଷ୍ଠ, ଦକ୍ଷ ଓ ନାରଦ ଆଦି ଦଶ ପୁତ୍ରଙ୍କୁ ଉତ୍ପନ୍ନ କଲେ । ଏମାନଙ୍କ ଦ୍ୱାରା ପ୍ରଥମେ ସମସ୍ତ ସୃଷ୍ଟି ଉତ୍ପନ୍ନ ହେଲା । ଏହା ବ୍ୟତୀତ ବ୍ରହ୍ମାଙ୍କ ଦକ୍ଷିଣ ବକ୍ଷ ସ୍ଥଳରୁ ଧର୍ମଦେବ ଓ ପୃଷ୍ଠଭାଗରୁ ଅଧର୍ମ ଉତ୍ପନ୍ନ ହେଲେ । ବ୍ରହ୍ମାଙ୍କ ପୁତ୍ର ଦକ୍ଷ ପ୍ରଜାପତିଙ୍କ ବିବାହ ମନୁକନ୍ୟା ପ୍ରସୂତୀଙ୍କ ସହ ହେଲା ପରେ ତାଙ୍କ ଗର୍ଭରୁ ୧୬ କନ୍ୟାଙ୍କର ଉତ୍ପତ୍ତି ହେଲା । ତାଙ୍କ ମଧ୍ୟରୁ ୧୩ ଜଣ କନ୍ୟାଙ୍କ ବିବାହ ଧର୍ମ ଦେବଙ୍କ ସହ ହେଲା । ଆଉ ତିନି ଜଣଙ୍କ ମଧ୍ୟରୁ ଜଣେ ଅଗ୍ନିଦେବଙ୍କୁ, ଜଣେ ପିତୃଗଣଙ୍କୁ ଓ ଜଣେ ଶିବଙ୍କୁ ବିବାହ କଲେ । ଧର୍ମଦେବଙ୍କୁ ବିବାହ କରିଥିବା କନ୍ୟାମାନେ ହେଲେ ଶ୍ରଦ୍ଧା, ମୈତ୍ରୀ, ଦୟା, ଶାନ୍ତି, ତୁଷ୍ଟି, ପୁଷ୍ଟି, କ୍ରିୟା, ଉନ୍ନତି, ବୁଦ୍ଧି, ମେଧା, ତିତିକ୍ଷା, ଲଜ୍ଜା ଓ ମୂର୍ତ୍ତି । ଧର୍ମଦେବ ସବୁ ପତ୍ନୀଙ୍କୁ ଶ୍ରଦ୍ଧା କରୁଥିଲେ । ମାତ୍ର ସବୁଠାରୁ ସାନ ପତ୍ନୀ ମୂର୍ତ୍ତିଙ୍କୁ ସବୁଠାରୁ ବେଶୀ ସ୍ନେହ କରୁଥିଲେ ।

ସମୟକ୍ରମେ ଧର୍ମଦେବଙ୍କ ସବୁ ପତ୍ନୀମାନେ ପୁତ୍ର ସନ୍ତାନଙ୍କୁ ଜନ୍ମ ଦେଲେ । ମାତ୍ର ଦେବୀ ମୂର୍ତ୍ତି ଦୁଇଟି ପୁତ୍ର ସନ୍ତାନକୁ ଜନ୍ମ ଦେଲେ । ସେମାନେ ହେଉଛନ୍ତି ନର ଓ ନାରାୟଣ । ସେମାନେ ନିଜର ସବୁ ମାତା ଓ ଭ୍ରାତାମାନଙ୍କୁ ସମାନ ସ୍ନେହ କରୁଥିଲେ । ମାତା ମୂର୍ତ୍ତି ପୁତ୍ରଙ୍କ ସେବା ଓ ଭକ୍ତିରେ ପ୍ରସନ୍ନ ହୋଇ ବରଦାନ ମାଗିବାକୁ କହିଲେ । ନର ଓ ନାରାୟଣ ଘର ଦ୍ୱାର ତ୍ୟାଗ କରି ତପସ୍ୟା କରିବାକୁ ଯିବାକୁ ବର ମାଗିଲେ । ମାତା ମୂର୍ତ୍ତି ଦୁଃଖିତ ହୋଇଗଲେ । ପରିବାର ଛାଡ଼ି ତପସ୍ୟା କରିବା କଥା ସେ ସହିପାରିଲେନି । କିନ୍ତୁ ବର ପ୍ରଦାନ କରିବାକୁ ସଂକଳ୍ପ କରିଥିବାରୁ ଅନୁମତି ଦେଲେ । ବଦ୍ରିକାଶ୍ରମରେ ନର ଓ ନାରାୟଣ ଯାଇ ତପସ୍ୟା କଲେ । ସେଇଦିନଠାରୁ ସେ ସ୍ଥାନଟି ନର-ନାରାୟଣ ତଥା ନାରାୟଣଶ୍ରମ ଭାବେ ପରିଚିତ ହେଲା ।

ବଦ୍ରିକାଶ୍ରମରେ ନରଙ୍କ ଉଗ୍ର ତପସ୍ୟାରେ ସନ୍ତୁଷ୍ଟ ହୋଇ ଭଗବାନ ନାରାୟଣ ବର ଯାଚିଲେ । ମାତ୍ର ଭଗବାନଙ୍କୁ ନର କହିଲେ, 'ଆପଣଙ୍କ ପ୍ରସନ୍ନତା ହିଁ ମୋ ପାଇଁ ଶ୍ରେଷ୍ଠ ବର ଅଟେ । ଏହାଠାରୁ ଭଲ ବର ଆଉ ମୋ ପାଇଁ କ'ଣ ହେବ ? ତଥାପି ଭଗବାନ ନିଜ ପ୍ରସନ୍ନତାରେ ବର ପ୍ରଦାନ କଲେ ଯେ, ସେ ଅଗ୍ରଜ ହେଲେ ମଧ୍ୟ ପ୍ରଥମେ ନରଙ୍କ ନାମ ପରେ ପ୍ରଭୁ ନାରାୟଣଙ୍କ ନାମ ଉଚ୍ଚାରଣ କରାଯିବ । ତେଣୁ ଯେଉଁଠି ଦୁଇ ଭାଇଙ୍କ ନାମ ଉଚ୍ଚାରଣ କରାଯିବ, ସେଠାରେ ଅନୁଜ ହୋଇ ମଧ୍ୟ ପ୍ରଥମେ ନର ତା'ପରେ ନାରାୟଣଙ୍କ ନାମ ରହିବ ।

ଏହା ଶୁଣି ନର କହିଲେ, 'ମୋର ସାରଥିତ୍ୱ ସ୍ୱୀକାର କରନ୍ତୁ' । ନାରାୟଣ ହସିଲେ । ଏ ଜନ୍ମରେ ଦୁହେଁ ତପସ୍ୱୀ ଥିବାରୁ ଏହା ସମ୍ଭବ ନୁହେଁ । ତେଣୁ ପର ଜନ୍ମରେ ଏହିଇଚ୍ଛା ପୂର୍ଣ୍ଣ କରିବାକୁ ନାରାୟଣ କହିଲେ ।

ବରଦାନ ଅନୁଯାୟୀ ପର ଜନ୍ମରେ ନର ଅର୍ଜୁନ ରୂପରେ ଓ ନାରାୟଣ ଶ୍ରୀକୃଷ୍ଣ ରୂପରେ ଅବତାର ଗ୍ରହଣ କଲେ । ମହାଭାରତ ଯୁଦ୍ଧରେ ଅର୍ଜୁନ ଶ୍ରୀକୃଷ୍ଣଙ୍କ ସାରଥି ହୋଇ ଭଗବାନ ନରଙ୍କୁ ଦେଇଥିବା ବରଦାନ ପୂର୍ଣ୍ଣ ହେଲା ।

ନର-ନାରାୟଣ ନାମକ ଦୁଇ ଭାଇ ଭଗବାନ ବିଷ୍ଣୁଙ୍କର ଅଂଶାବତାର ରୂପେ ତପସ୍ୟାର ମାର୍ଗ ପ୍ରଦର୍ଶିତ କଲେ । ଶ୍ରୀମଦ୍

ଭାଗବତର ଏକାଦଶ ସ୍କନ୍ଧର ଚତୁର୍ଥ ଅଧ୍ୟାୟରେ ଭଗବାନ ନାରାୟଣ (ବିଷ୍ଣୁ)ଙ୍କର ଅବତାର ବିଷୟରେ ବର୍ଣ୍ଣନା ହୋଇଅଛି ।

ଭଗବାନ ନର-ନାରାୟଣ ବଦ୍ରିକାଶ୍ରମରେ ଘୋର ତପସ୍ୟା କଲେ । ସେମାନଙ୍କ ତପସ୍ୟାର ତେଜରେ ଇନ୍ଦ୍ର ଭୟଭୀତ ହୋଇଗଲେ ତାଙ୍କର ଇନ୍ଦ୍ରାସନ ଛିନ୍ନ ହେବା ଆଶଙ୍କାରେ ଇନ୍ଦ୍ର ଶୂନ୍ୟବାଣୀରେ କହିଲେ, ହେ ତପସ୍ୱୀମାନେ! ମୁଁ ତୁମ୍ଭମାନଙ୍କର ତପସ୍ୟାରେ ବହୁତ ପ୍ରସନ୍ନ ଅଛି । ତୁମ୍ଭେମାନେ ଯାହା ଚାହଁ ବରଦାନ ମାଗ । ମାତ୍ର ଭଗବାନ ନର-ନାରାୟଣ ତିଳେମାତ୍ର ଚାହିଁଲେ ନାହିଁ । ଇନ୍ଦ୍ରଦେବଙ୍କ ଭୟ ବଢିବାରୁ ସେ ତପସ୍ୟାରେ ବିଘ୍ନ ସୃଷ୍ଟି କରିବାକୁ କାମଦେବ, ବସନ୍ତ ଓ ଅପ୍ସରାମାନଙ୍କୁ ପଠାଇଲେ । ନୃତ୍ୟ, ଗୀତରେ ମାଦକ ଭରା ପରିବେଶ, କାମୋଦ୍ଦୀପକ ଆଚରଣରେ ବିମୋହିତ କରିବାକୁ ପ୍ରୟାସ କଲେ । ବିଭିନ୍ନ ଶବ୍ଦ ଶୁଣି ଭଗବାନ ନର-ନାରାୟଣ ଚକ୍ଷୁ ଉନ୍ମୁକ୍ତ କଲେ । ତାଙ୍କର ତେଜମୟ ଦୃଷ୍ଟି ଦେଖି ଅପ୍ସରାମାନେ ଡ଼ରିଗଲେ । ମହର୍ଷି ନିଜ ତପୋବଳରେ ଭସ୍ମ କରି ଦେବେ ବୋଲି ସେମାନେ ଭୟଭୀତ ହେବାର ଦେଖି ଭଗବାନ ମଧୁର ବାଣୀରେ କହିଲେ, ଭୟ ନକରିବାକୁ । ବରଂ ମୋ ଆଶ୍ରମରେ ଆସି ଆତିଥ୍ୟ ସ୍ୱୀକାର କରନ୍ତୁ ।

ତା'ପରେ ଭଗବାନ ଆମ୍ବ ଡ଼ାଳରେ ନିଜ ଜଂଘକୁ ଚିରିଲେ, ଯେଉଁଠାରୁ ଅନେକ ଦେବାଙ୍ଗନା ସୃଷ୍ଟି ହେଲେ । ସେମାନେ ଅପ୍ସରାମାନଙ୍କଠାରୁ ଅତ୍ୟଧିକ ସୁନ୍ଦର ଥିଲେ । ଅପ୍ସରାମାନେ ମହର୍ଷିଙ୍କର ତପୋବଳ ଓ ସାମର୍ଥ୍ୟ ଦେଖି ଲଜ୍ଜିତ ମନେ କଲେ । ଭଗବାନ ନାରାୟଣ ଅପ୍ସରାଙ୍କୁ କହିଲେ- ଆପଣ ଦେବାଙ୍ଗନାମାନଙ୍କ ମଧ୍ୟରୁ ଉର୍ବଶୀକୁ ନେଇ ଦେବଲୋକରେ ଇନ୍ଦ୍ରଦେବଙ୍କୁ ମୋ ତରଫରୁ ଉପହାର ସ୍ୱରୂପ ପ୍ରଦାନ କରିବେ ।

ଅନ୍ୟ ଅପ୍ସରାମାନଙ୍କୁ ମଧ୍ୟ ବରଦାନ ମାଗିବାକୁ ଭଗବାନ କହିଲେ, ହେଲେ ଭଗବାନଙ୍କର ତ୍ରିଭୁବନ କମନୀୟ ରୂପ ଦେଖି ଆସକ୍ତ ହୋଇ ଉତ୍ତର ଦେଲେ- ହେ ପ୍ରଭୁ! ଯଦି ଆପଣ ଆମ ଉପରେ ପ୍ରସନ୍ନ ହୋଇଛନ୍ତି, ତେବେ ଆଜୀବନ ଆପଣଙ୍କ ଦାସୀ ହୋଇ ରହିବାକୁ ଆମକୁ ବରଦାନ ଦିଅନ୍ତୁ' ।

ଭଗବାନ ଚିନ୍ତାରେ ପଡ଼ିଗଲେ । ତାଙ୍କୁ କ୍ରୋଧାନ୍ୱିତ ଦେଖି ଭଗବାନ ନର କହିଲେ, ଶାନ୍ତ ହେବାକୁ । ଏ ଜନ୍ମ ପରେ କୃଷ୍ଣାବତାରରେ ଅପ୍ସରାମାନଙ୍କ ଦାସୀ ହେବାର ମନୋବାଞ୍ଛା ପୂର୍ଣ୍ଣ ହେବା ପାଇଁ ଆଜ୍ଞା ଦେଲେ । ପର ଜନ୍ମରେ ଅପ୍ସରାମାନେ ଗୋପାଳୁଣୀ ରୂପେ କୃଷ୍ଣଙ୍କ ଦାସୀ ହେଲେ । ଭଗବାନ ନାରାୟଣ ନିଜର ବରଦାନ ପୂର୍ଣ୍ଣ କଲେ ।

ବଦ୍ରିକାଶ୍ରମରେ ନର-ନାରାୟଣ ପର୍ବତ ଅବସ୍ଥିତ । ପର୍ବତ ଉପରେ ବଦ୍ରିବିଶାଳଙ୍କ ଭବ୍ୟ ଭବନ ଓ ଆବାସୀୟ ଭବନ ଅବସ୍ଥିତ । ବଦ୍ରିବିଶାଳ ମନ୍ଦିରର କିଛି ବାଟ ସମ୍ମୁଖରେ ଭଗବାନ ନର-ନାରାୟଣ ମାତା ମୂର୍ତ୍ତିଙ୍କ ମନ୍ଦିର ଅବସ୍ଥିତ । ଯାହାକି ପୌରାଣିକ ଆଖ୍ୟାନର ସତ୍ୟତା ପରିପ୍ରକାଶ କରେ । ଭାଦ୍ରବ ମାସର ପବିତ୍ର ଦ୍ୱାଦଶୀ ତିଥିରେ ପ୍ରତିବର୍ଷ ଏଠାରେ ମେଳାର ଆୟୋଜନ ହୁଏ । କୁହାଯାଏ, ଭଗବାନ ନର-ନାରାୟଣ ତପସ୍ୟାରେ ମଗ୍ନ ଥିଲାବେଳେ ମାତା ମୂର୍ତ୍ତି ତାଙ୍କୁ ଲମ୍ବା ଜଟା ଧାରଣ କରିଥିବା ଦେଖି କାନ୍ଦି ପକାଇଥିଲେ । ମାତାଙ୍କର ଦୃଢ ଧୈର୍ଯ୍ୟ ରଖି ଇଚ୍ଛା ପୂର୍ଣ୍ଣ ପାଇଁ ସବୁ ବର୍ଷ ଦ୍ୱାଦଶୀ ତିଥିରେ ତାଙ୍କୁ ଭେଟିବାର ପ୍ରତିଶ୍ରୁତି ଭଗବାନ ନର-ନାରାୟଣ ଦେଲେ । ସେଇଦିନଠାରୁ ଭାଦ୍ରବ ଦ୍ୱାଦଶୀରେ ମାତା ମୂର୍ତ୍ତିଙ୍କ ମନ୍ଦିର ପ୍ରାଙ୍ଗଣରେ ମେଳା ସହିତ ପୂଜା ମଧ୍ୟ ହୁଏ ।

ପୁରାଣରେ ନର-ନାରାୟଣ ପର୍ବତକୁ ଗନ୍ଧମାର୍ଦ୍ଦନ ପର୍ବତ ମଧ୍ୟ କୁହାଯାଏ । କାରଣ ଏଠାକାର ପ୍ରତ୍ୟେକ ଘାସ, ଫୁଲ ଓ ପତ୍ର ମଧ୍ୟରୁ ଉତ୍କୃଷ୍ଟ ସୁଗନ୍ଧ ବାହାରେ । ଭଗବାନ ନର-ନାରାୟଣ ଏହିଭଳି ତପଃ ସାଧନାରେ ଆଜୀବନ ବ୍ରତୀ ହୋଇ ସେଠାକାର ସ୍ଥାନ ମଧ୍ୟ ଶାନ୍ତକାନ୍ତମୟ ହୋଇଗଲା । ତପଃ ସାଧନାର ବିଶେଷ ସ୍ଥଳ ରୂପେ ବଦ୍ରିକାଶ୍ରମ ପରିଚିତ । ଏହି ବଦ୍ରିକାଶ୍ରମକୁ ପୁରାଣରେ ପ୍ରାଚୀନ ଶିବଭୂମି ମଧ୍ୟ କୁହାଯାଏ ।

ପ୍ଲଟ୍ ନଂ-୧୩୬/୮୫୦
ବ୍ରହ୍ମେଶ୍ୱରପାଟଣା, ଭୁବନେଶ୍ୱର-୧୮

# ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର

**କବିତା ଦେବୀ**

ସୁଖ ଆଉ ଦୁଃଖ ହେଉଛି ମାନବ ଧର୍ମ । ଆତ୍ମା ସୁଖୀ ନୁହେଁ, ଆତ୍ମା ଦୁଃଖୀ ମଧ୍ୟ ନୁହେଁ । ଆତ୍ମା ହେଉଛି ଆନନ୍ଦ ସ୍ୱରୂପ । ପରମାତ୍ମା ଶ୍ରୀରାମ ହେଉଛନ୍ତି ପରମାନନ୍ଦ ସ୍ୱରୂପ । ମାୟାର ପରଦା ତଳେ ସେ ଲୁଚି ରହିଥାନ୍ତି । ପ୍ରତ୍ୟେକ କଳ୍ପରେ ଲୀଳା କରିବା ପାଇଁ ସେ ଅବତାର ଗ୍ରହଣ କରନ୍ତି । ଅନ୍ୟାୟ ଅର୍ଧମର ପାପଭାର ଦୂର କରିବାକୁ ସେ ପୃଥିବୀରେ ପଦାର୍ପଣ କରିଥାନ୍ତି ।

ଲଙ୍କେଶ୍ୱର ରାବଣ ଥିଲେ ବହୁ ଐଶ୍ୱର୍ଯ୍ୟର ଅଧିକାରୀ । ସେ ଜ୍ଞାନୀ ଥିଲେ ମଧ୍ୟ ସଦାସର୍ବଦା ଗର୍ବ ଅଂହକାର ତାଙ୍କ ମନ ଭିତରେ ପୂରି ରହିଥିଲା । ଦେବତା ଓ ମୁନିଋଷିମାନଙ୍କୁ ସେ ବହୁତ କଷ୍ଟ ଦେଉଥିଲେ । ଅନ୍ୟାୟ ଅତ୍ୟାଚାର ଦିନକୁ ଦିନ ବଢି ଚାଲିଲା । ଦେବତାମାନେ ଅତି ଦୁଃଖରେ ପ୍ରାର୍ଥନା କରି କହିଲେ ହେ ପ୍ରଭୁ, ପୃଥିବୀର ପାପଭାର ବଢିଗଲାଣି । ଆପଣ ଧରାରେ ଅବତାର ଧାରଣ କରନ୍ତୁ । ସେତିକି ବେଳେ ପ୍ରଭୁ ଦେବତାମାନଙ୍କୁ ବରଦାନ ଦେଇ କହିଲେ, ମୁଁ ଏଥର ସୂର୍ଯ୍ୟବଂଶରେ ପ୍ରକଟ ହେବି । ସୂର୍ଯ୍ୟବଂଶର ରାଜା ଦଶରଥ ଏବଂ ମାତା କୌଶଲ୍ୟାଙ୍କ କୋଳ ଅଳଂକୃତ କରି ମର୍ତ୍ତ୍ୟପୁରକୁ ଆସିବି । ଭଗବାନଙ୍କର ଏପରି ବରଦାନରେ ଦେବତାମାନେ ଆଶ୍ୱସ୍ତିଲାଭ କଲେ ।

ଅଯୋଧ୍ୟାର ରାଜା ଦଶରଥଙ୍କ ସନ୍ତାନ ନଥିବା ଯୋଗୁଁ ରାଜା ଏବଂ ପାଟରାଣୀ କୌଶଲ୍ୟା ସଦାସର୍ବଦା ଦୁଃଖରେ ମ୍ରିୟମାଣ ହୋଇ ପଡୁଥିଲେ । ମନରେ ସଂତାନ ପ୍ରାପ୍ତିର ଆଶାରଖି ରାଜା ଦଶରଥ କୈକେୟୀ ଏବଂ ସୁମିତ୍ରାଙ୍କୁ ଧର୍ମପତ୍ନୀ ରୂପେ ଗ୍ରହଣ କରିଥିଲେ । କିନ୍ତୁ ସେମାନେ ମଧ୍ୟ ସଂତାନବତୀ ହୋଇପାରିଲେ ନାହିଁ । ଏ ବିଶାଳ ସୂର୍ଯ୍ୟବଂଶର ଉତ୍ତରାଧିକାରୀ କିଏ ହେବ ? ଏହିକଥା ଚିନ୍ତାକରି ରାଜା ଭାଙ୍ଗିପଡିଲେ । କୁଳଗୁରୁ ବଶିଷ୍ଠ ରାଜାଙ୍କୁ କିପରି ଏ ବିପଦରୁ ମୁକ୍ତି କରାଇବେ, ତାହା ଚିନ୍ତା କରିବାକୁ ଲାଗିଲେ । କାରଣ ବଶିଷ୍ଠ ଥିଲେ ସର୍ବଜ୍ଞ । ତେଣୁ ଦଶରଥଙ୍କୁ ପୁତ୍ରେଷ୍ଟି ଯଜ୍ଞ କରିବାକୁ ପରାମର୍ଶ ଦେଲେ । ରାଜା ଖୁସି ହୋଇଗଲେ । ବଶିଷ୍ଠ ଜଣାଇଦେଲେ, ପୁତ୍ରେଷ୍ଟି ଯଜ୍ଞ କେବଳ ଜଣେ ଶାସ୍ତ୍ରଜ୍ଞ ଶୁଦ୍ଧପୁତ୍ର ବ୍ରାହ୍ମଣ ପୁରୋହିତଙ୍କ ଦ୍ୱାରା ହିଁ ସମ୍ଭବ ହେବ । ଋଷ୍ୟଶୃଙ୍ଗ ଏହି ଯଜ୍ଞ କରିବାକୁ ଉପଯୁକ୍ତ ବ୍ରାହ୍ମଣ ଅଟନ୍ତି । ରାଜା ଦଶରଥଙ୍କ ନିମନ୍ତ୍ରଣ ରକ୍ଷାକରି ଋଷ୍ୟଶୃଙ୍ଗ ସଙ୍ଗରେ ସ୍ତ୍ରୀ ଶାନ୍ତାଙ୍କୁ ନେଇ ଅଯୋଧ୍ୟାରେ ପଦାର୍ପଣ କଲେ । ଯଜ୍ଞ ଆରମ୍ଭ ହେଲା । ପୂର୍ଣ୍ଣାହୂତି ପରେ ଋଶ୍ୟଶୃଙ୍ଗଙ୍କ ନିର୍ଦ୍ଦେଶ ଅନୁଯାୟୀ ତିନିରାଣୀ ଇଷ୍ଟଦେବତାଙ୍କ ମନ୍ଦିରକୁ ଯାଇ, ଯଜ୍ଞ ଶେଷରେ 'ଚରୁ' ସେବନ କରିବା ପରେ ତାଙ୍କଠାରୁ ଆଶୀର୍ବାଦ ପାଇ ନିଜ ଅନ୍ତପୁରକୁ ଆସିଲେ ।

ପୁତ୍ରେଷ୍ଟି ଯଜ୍ଞର ଏକବର୍ଷ ଭିତରେ ତିନିରାଣୀଙ୍କ ଗର୍ଭରୁ ପୁତ୍ର ସଂତାନ ଜାତ ହେଲେ । ଚୈତ୍ରମାସ ଶୁକ୍ଳପକ୍ଷ ନବମୀ ତିଥି ପୁନର୍ବସୁ ନକ୍ଷତ୍ରରେ କୌଶଲ୍ୟାଙ୍କ ଗର୍ଭରୁ ଜାତହେଲେ ଏକ ପରମ ତେଜସ୍ୱୀ ପୁତ୍ର ରାମଚନ୍ଦ୍ର । କିଛି ସମୟ ପରେ କୈକେୟୀଙ୍କ ଗର୍ଭରୁ ଭରତ ଏବଂ ସୁମିତ୍ରାଙ୍କ ଗର୍ଭରୁ ଯମଜ ପୁତ୍ର ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜନ୍ମ ହୋଇଥିଲେ । ଚାରିପୁତ୍ରଙ୍କ ମଧ୍ୟରୁ ରାମଚନ୍ଦ୍ର ସବୁଠାରୁ ସୁନ୍ଦର ଏବଂ ଗୁଣବାନ୍ ଥିଲେ । ଚାରି ଭାଇଙ୍କୁ ସେ ସ୍ନେହ ଶ୍ରଦ୍ଧାରେ ବାନ୍ଧି ରଖିଥିଲେ । କାଳକ୍ରମେ ଚାରିଭାଇ ଶିଶୁରୁ କିଶୋର ହେଲେ । ଗୁରୁକୁଳରେ ରହି

ବିଦ୍ୟାଶିକ୍ଷା ସହିତ ଧନୁର୍ବିଦ୍ୟା, ରଣକୌଶଳ, ରାଜନୀତି ବିଷୟରେ ଶିକ୍ଷା କଲେ । ପରବର୍ତ୍ତୀ ସମୟରେ ବିଶ୍ୱାମିତ୍ରଙ୍କ ସଂଗରେ ତାଙ୍କ ସିଦ୍ଧାଶ୍ରମ ଆଶ୍ରମକୁ ଯାଇ ଯୋଗବିଦ୍ୟା ଏବଂ ଅନେକ ନୀତିଶାସ୍ତ୍ର ଶିକ୍ଷା କଲେ ।

ରାମଙ୍କର ଥିଲା ଅତୀବ ମେଧା ଓ ସ୍ମୃତିଶକ୍ତି । ସେ ପିଲାଦିନୁ ଦିବ୍ୟଶକ୍ତି ପ୍ରକାଶ କରିଥିଲେ । ମନୁଷ୍ୟ ସମାଜକୁ ପାପ ଓ ଗ୍ଲାନିରୁ ଉଦ୍ଧାର କରିବା ପାଇଁ ମାନବ ରୂପରେ ଧରାଧାମରେ ଆବିର୍ଭୂତ ହୋଇଛନ୍ତି । ଅଭିଶପ୍ତା ପାଷାଣୀ ଅହଲ୍ୟାକୁ ଶାପମୁକ୍ତ କରି, ଯୁଗେଯୁଗେ ନାରୀ ଜାତିକୁ ଉଚ୍ଚ ଆସନ ଦେଇ, ତାଙ୍କର ମହାନ୍ ବନ୍ଧୁପ୍ରେମ ସହାନୁଭୂତି ଉଦାରତା ପ୍ରକାଶ କରିଥିଲେ ।

ଶ୍ରୀରାମ ଗୁଣାବର୍ଣ୍ଣ । ସଦ୍‌ଗୁଣର ସମୁଦ୍ର ଭଳି । ଅର୍ଥାତ୍ ଜଗତର ସମସ୍ତ ଦିବ୍ୟ ସଦ୍‌ଗୁଣର ଭଣ୍ଡାର ତାଙ୍କ ହୃଦୟରେ ପରିପୂର୍ଣ୍ଣ । ପିତୃମାତୃ ଭକ୍ତି, ବନ୍ଧୁ ପ୍ରେମ, ସଂଯମ, ସଦାଚାର, ସରଳତା, ଉଦାରତା ଶରଣାଗତ ବତ୍ସଳତା, ବିନୟ, ମିଷ୍ଟଭାଷଣ, ଏକବଚନ, ଏକପତ୍ନୀ ବ୍ରତଧାରୀ ଆଦି ସମସ୍ତ ଦିବ୍ୟ ସଦ୍‌ଗୁଣ କେବଳ ମର୍ଯ୍ୟାଦାପୁରୁଷ ଶ୍ରୀରାମଙ୍କଠାରେ ହିଁ ସମାବେଶ ହୋଇଛି । କାରଣ ସେ ନିଷ୍ଠାପର ଭାବରେ ସତ୍ୟ ଓ ଧର୍ମ ରକ୍ଷାକରି ଆସୁଥିଲେ । ତେଣୁ ଶାସ୍ତ୍ରରେ କୁହାଯାଇଛି, ରାମ ହିଁ ଧର୍ମ, ଧର୍ମ ହିଁ ରାମ । ରାମ ହିଁ ଜୀବାତ୍ମା ଓ ପରମାତ୍ମାର ସମ୍ମିଶ୍ରଣ । କେବଳ ଗୋଟିଏ ରାମ ଶବ୍ଦ ଉଚ୍ଚାରଣ କରିବାମାତ୍ରେ ବିଷ୍ଣୁ ସହସ୍ର ନାମର ପୁଣ୍ୟ ମିଳିଥାଏ ।

ରାମ ଶବ୍ଦର ଅର୍ଥ ହେଉଛି ଯିଏ ପୂର୍ଣ୍ଣଦାନ କରିଥାଏ । ଭକ୍ତିର ସହ ଯିଏ ଶ୍ରୀରାମଙ୍କର ସେବା ପୂଜା କରେ, ଯିଏ ତାଙ୍କର ସଦ୍‌ଗୁଣଗୁଡିକ ନିଜ ଜୀବନରେ ପ୍ରତିପାଳିତ କରିପାରେ, ସେ ହିଁ ମର୍ଯ୍ୟାଦାପୁରୁଷ ଭଗବାନ ଶ୍ରୀରାମଙ୍କ ଦର୍ଶନ ଲାଭ କରିପାରେ । ପରମାତ୍ମାଙ୍କୁ ଦର୍ଶନ କରି ମାନବ ଜୀବନର ପୂର୍ଣ୍ଣତା ପ୍ରାପ୍ତି ଲାଭ କରିଥାଏ ।

ଅବସରପ୍ରାପ୍ତ ଶିକ୍ଷୟିତ୍ରୀ
ସେକ୍ଟର-୩/୫୫
ନୀଳାଦ୍ରି ବିହାର
ଭୁବନେଶ୍ୱର-୭୫୧୦୨୧

# ଏହି ମାଟିରେ...

**ଦୁର୍ଗା ପ୍ରସାଦ ଷଡ଼ଙ୍ଗୀ**

ଏହି ମାଟିରେ ପୁରୁଷୋତ୍ତମ
ଏହି ମାଟିରେ ଏସିଆ ଭାରତ
ପୂର୍ବରେ ଉତ୍କଳ ଶ୍ରୀକ୍ଷେତ୍ର
ଏହି ମାଟିରେ...
ପ୍ରକୃତି କଲା ଜାଗୃତି
ଏହି ମାଟିର ଦେଖ ଆକୃତି
ଶଙ୍ଖ ଭଳି ପୁରୀ ହସୁଛି
ମା' ପରି ଏ ଦେଶ ଦିଶୁଛି
ସେବାହିଁ ଆମର ଲକ୍ଷ୍ୟ

ସବୁଠି ଅଛନ୍ତି ଈଶ୍ୱର
ଏହି ମାଟିରେ...
ଭୁଆଁ ନାହିଁ ବିନା ଭୂଇଁ
ସ୍ୱର୍ଗର ସ୍ୱର୍ଗ ଏହି
ଅଧିଷ୍ଠିତ ଦେବାଦେବୀ
ଏହି ମାଟିରେ ଜନମ ପାଇଁ
ଗାଏ ଭାଗବତ ପୁରାଣ
ଯୁଗ ସତ୍ୟ, ତ୍ରେତା, ଦ୍ୱାପର
ଏହି ମାଟିରେ...

ଫୁଟିଛୁ କଢ ହୋଇ
ଶୋଭା ପାଉଛୁ ଫଳ ପାଇ
ଏନ୍ତୁଡିଶାଳରୁ ଆମ ଜୁଇ
ସ୍ୱଚ୍ଛ ରଖିବା ଏ ଜଗତ
ଭୂଇଁଠାରୁ ଭୁଆଁ ପର୍ଯ୍ୟନ୍ତ
ଏହି ମାଟିରେ... ।

ଘର ନଂ- ୧୦୫/୧୧୬୯
ଅନନ୍ତ ବିହାର
ପୋଖରୀପୁଟ, ଭୁବନେଶ୍ୱର

# ମହାବିଷୁବ ପଣା ସଂକ୍ରାନ୍ତି

**ଗୋଲାପ ନନ୍ଦ**

ଓଡିଆ ପାଞ୍ଜି ଗଣନା ଅନୁସାରେ ବୈଶାଖ ମାସର ସଂକ୍ରାନ୍ତିକୁ ପଣା ସଂକ୍ରାନ୍ତି, ଜଳ ସଂକ୍ରାନ୍ତି, ଠେକିବସା ସଂକ୍ରାନ୍ତି ଓ ମହାବିଷୁବ ସଂକ୍ରାନ୍ତି କୁହାଯାଏ । ବିଶେଷ କରି ହିନ୍ଦୁ ଧର୍ମର ଲୋକେ ଏ ପର୍ବ ପାଳନ କରିଥାନ୍ତି । ଏହା ଇଂରାଜୀ ମାସ ଏପ୍ରିଲ ମାସରେ ପଡେ । ଏହା ହିଁ ପ୍ରଥମ ସଂକ୍ରାନ୍ତି ଭାବରେ ଗ୍ରହଣ କରାଯାଏ । ଏହି ଦିନଟିକୁ ଓଡିଆ ନବ ବର୍ଷ ଭାବରେ ମଧ୍ୟ ପାଳନ କରାଯାଏ । ଏହିଦିନ ବର୍ଷ ଆରମ୍ଭ ହେଉଥିବାରୁ ଓଡିଆ ପରିବାରରେ ଦେବଦେବୀଙ୍କଠାରେ ସ୍ୱତନ୍ତ୍ର ପୂଜା, ଭୋଗ, ହୋମ ଆଦି କରାଯାଇଥାଏ । ଏହି ସମୟରେ ସୂର୍ଯ୍ୟ କିରଣ ବୃଦ୍ଧି ପାଇବା ସହ ହଜମ ଶକ୍ତି ମଧ୍ୟ ବୃଦ୍ଧି ପାଇଥାଏ । ଗରିଷ୍ଠ ଖାଦ୍ୟ ହଜମ ହେଉଥିବାରୁ ବୁଟ ଛତୁ ପରି ଗରିଷ୍ଠ ଖାଦ୍ୟ ପଦାର୍ଥ ଗ୍ରହଣ ପାଇଁ ଆୟୋଜନ ହୋଇଥାଏ । ଦେହର ଅତ୍ୟଧିକ ତାପ ଶକ୍ତି ସମ ଅବସ୍ଥାକୁ ଆଣିବା ପାଇଁ ପଣା ପାନର ବ୍ୟବସ୍ଥା ମଧ୍ୟ ରହିଛି । ତେଣୁ ମହାବିଷୁବ ସଂକ୍ରାନ୍ତି ଦିନରେ ବିଭିନ୍ନ ଦେବଦେବୀ ମନ୍ଦିରରେ ଛତୁଆ ଓ ପଣା ଭୋଗର ବିଧି ରହିଛି । ଏହିଦିନ ସାହି ପଡିଶା ବନ୍ଧୁ ବାନ୍ଧବ ଓ ବ୍ରାହ୍ମଣମାନଙ୍କୁ ପଣା ଦିଆଯାଏ । ତେଣୁ ଏହି ଦିନଟିକୁ ପଣା ସଂକ୍ରାନ୍ତି କୁହାଯାଏ ।

ପଣା ସଂକ୍ରାନ୍ତିଠାରୁ ରାସ୍ତା କଡରେ ପଥିକମାନଙ୍କର ତୃଷ୍ଣା ନିବାରଣ ପାଇଁ ଜଳଛତ୍ରମାନ ଖୋଲାଯାଇଥାଏ । ଏହା ସହିତ ବୃକ୍ଷ ମୂଳରେ ଜଳ ଦାନର ପ୍ରଥା ଆମ ସମାଜରେ ପ୍ରଚଳିତ । ସେଥିପାଇଁ ବହୁ ପରିବାରରେ ଚଉଁରାରେ ପୂଜା ପାଉଥିବା ତୁଳସୀ ବୃକ୍ଷ ଉପରେ ଛାମୁଣ୍ଡିଆ କରି ଘଡିରେ ଜଳ ରଖି ତା'ର ନିମ୍ନ ଅଂଶରେ ସରୁ କଣା କରି ସୂକ୍ଷ୍ମ ଧାରରେ



ଜଳଦାନ କରାଯାଇଥାଏ । ଠେକିରୁ ଧୀରେ ଧୀରେ ଝରୁଥିବା ଜଳ ବର୍ଷାର ସୂଚନା ଦେଇଥାଏ । ଏହି ସଂକ୍ରାନ୍ତି ପରଠାରୁ ବୃକ୍ଷ ଜଗତ ଏବଂ ଜୀବ ଜଗତକୁ ଜଳପ୍ରଦାନ କରାଯାଉଥିବାରୁ ଏହି ସଂକ୍ରାନ୍ତିର ଅନ୍ୟ ନାମ ଜଳ ସଂକ୍ରାନ୍ତି ।

ପଣା ସଂକ୍ରାନ୍ତି ପରଠାରୁ ବାୟୁର ଗତି ମଧ୍ୟ ପ୍ରଖର ହୁଏ । ଉଭୟ ଅଗ୍ନି ଓ ବାୟୁର ପ୍ରକୋପରୁ ରକ୍ଷା ପାଇବା ପାଇଁ ଏହି ସମୟରେ ହନୁମାନ ଜୟନ୍ତୀ ପାଳନ କରାଯାଏ । ଏହି ଦିନ ଚଣ୍ଡୀ, ସାରଳା, ମଙ୍ଗଳା ଓ ବିରଜା ଆଦି ଠାକୁରାଣୀ ମନ୍ଦିରମାନଙ୍କରେ ଝାମୁ ଯାତ୍ରା ପାଳନ କରାଯାଏ । ଘଣ୍ଟପାଟୁଆମାନେ ଘଣ୍ଟ ମୁଣ୍ଡେଇ, କାଠ ଗୋଡ ପିନ୍ଧି, ଠାକୁରାଣୀ ମନ୍ଦିର ସମ୍ମୁଖରେ ନିଆଁରେ ଚାଲନ୍ତି । ଦଣ୍ଡ

ବ୍ରତଧାରୀମାନେ କଠୋର ତାପ ସହ୍ୟ କରିବାର ଶକ୍ତି ସମ୍ପର୍କରେ ସମାଜକୁ ଶିକ୍ଷା ପ୍ରଦାନ କରିଥାନ୍ତି । ରୁକ୍ଷ, ପାଣ୍ଡୁର ଉତ୍ତପ୍ତ ମଧ୍ୟାହ୍ନର ଭୂମି ଉପରେ ପାଦ ରଖିବା ଅସମ୍ଭବ ହେଉଥିବା ବେଳେ ଦେବୀଙ୍କର ଅପାର କରୁଣା ଲାଭ କରି ଅଗ୍ନି ମଧ୍ୟରେ ଭକ୍ତମାନେ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଅତିକ୍ରମ କରି ନିଜର ସାଧନା, ନିଷ୍ଠାର ଯେଉଁ ଚରମ ପରୀକ୍ଷା ଦେଇଥାନ୍ତି, ତାହା ଦର୍ଶନକୁ ଆକୃଷ୍ଟ କରିଥାଏ । ମାସାଧିକ କାଳ ଧରି ଚାଲିଥିବା ଦଣ୍ଡ ନାଚର ଅନ୍ତଭାବେ ମେରୁ ଯାତ୍ରା ପାଳନ କରାଯାଏ । ବାଲେଶ୍ୱରରେ ଏହାକୁ ଚଡକ ଯାତ୍ରା ବୋଲି କୁହାଯାଏ ।

ଏହି ଦିନ ପ୍ରତି ଓଡ଼ିଆ ଘରେ ପଣା ପ୍ରସ୍ତୁତ କରି ପିଇଥାନ୍ତି ଓ ସାଙ୍ଗସାଥୀଙ୍କୁ ପଣା ପିଇବାକୁ ଦେଇଥାନ୍ତି । ଏହି ପଣା ବେଲ, ଦହି, କଦଳୀ, ଗୁଡ, ନଡ଼ିଆ, ଛେନା ଇତ୍ୟାଦିରେ ପ୍ରସ୍ତୁତ କରାଯାଇଥାଏ, ଯାହା ଗରମ ଦିନେ ଶରୀରକୁ ଶୀତଳତା ପ୍ରଦାନ କରି ଶାନ୍ତି ପ୍ରଦାନ କରିଥାଏ । ବେଲରୁ ଶସ ବାହାର କରି ତାକୁ ଦହି, ଗୁଡ, ଛେନା, କଦଳୀ, ଗୋଲମରିଚ ଗୁଣ୍ଡ ମିଶାଇ ପାଣି ଦେଇ ଚକଟି ଏହା ତିଆରି କରାଯାଏ । ପ୍ରଖର ଗ୍ରୀଷ୍ମ ତାପରୁ ରକ୍ଷା ପାଇବା ପାଇଁ ଏବଂ ଧର୍ମ ଅର୍ଜନ କରିବା ପାଇଁ ଲୋକେ ବ୍ରାହ୍ମଣଙ୍କୁ ଏବଂ କେହି କେହି ପଥିକଙ୍କୁ ପଣା, ଛତୁଆ, ପଙ୍ଖା, ଛତା, ଜୋତା ଆଦି ଦାନ କରନ୍ତି ।

ବିଷୁବ ସଂକ୍ରାନ୍ତିକୁ ବୈଶାଖ ମାସର ପ୍ରଥମ ଦିନ ବୋଲି ଧରାଯାଏ । ଏହାର ମଧ୍ୟ ଏକ ନିର୍ଦ୍ଦିଷ୍ଟ କାରଣ ରହିଛି । ସୌର ଚଳନ ଅନୁଯାୟୀ ଗୋଟିଏ ସଂକ୍ରାନ୍ତିରୁ ଅନ୍ୟ ଏକ ସଂକ୍ରାନ୍ତି ପର୍ଯ୍ୟନ୍ତ ସମୟକୁ ଏକ ମାସ ବୋଲି ଧରାଯାଏ । ମେଷ ସଂକ୍ରାନ୍ତି ଓ ତୁଳା ସଂକ୍ରାନ୍ତିରେ ସୂର୍ଯ୍ୟ ବିଷୁବରେଖା ଉପରେ ବିଶ୍ରାମ କରନ୍ତି । ତେଣୁ ଏହି ଦିନର ଦିନ ଓ ରାତିର ସମୟ ସମାନ ରହେ । ଏହିଦିନ ସୂର୍ଯ୍ୟ ବିଷୁବ ରେଖା ଉପରେ ଅବସ୍ଥାନ କରୁଥିବାରୁ ଏହାକୁ ବିଷୁବ ସଂକ୍ରାନ୍ତି କୁହାଯାଏ । ମେଷ ସଂକ୍ରାନ୍ତି ପରେ ସୂର୍ଯ୍ୟ ଉତ୍ତରାଭିମୁଖୀରେ ଗତି କରନ୍ତି । ଆମ ଦେଶ ବିଷୁବରେଖାର ଉତ୍ତର ଦିଗରେ ରହୁଥିବା ଏହି ଦିନଟିକୁ ସୂର୍ଯ୍ୟଙ୍କର ପ୍ରଥମ ଯାତ୍ରା ଭାବେ ଗଣନା କରି ନୂଆ ବର୍ଷ ଆରମ୍ଭ ବୋଲି ଗଣନା କରାଯାଏ । ସାରା ଦେଶର ସାମାଜିକ ସାଂସ୍କୃତିକ ଓ ଧାର୍ମିକ ପରମ୍ପରାର ଲୋକେ ଏହି ପଣାସଂକ୍ରାନ୍ତି ପାଳନ କରନ୍ତି ।

ସାରା ଭାରତରେ ଏହି ଦିନଟିରେ ଅନ୍ୟ ଏକ ବିଶେଷ ଦିନ ଭାବେ ବ୍ରତ ପାଳନ କରାଯାଏ । ତାହା ହେଲା - ପ୍ରଭୁ ଶ୍ରୀରାମଙ୍କର ପରମ ଭକ୍ତ ବୀର ହନୁମାନଙ୍କର ଜନ୍ମ ଦିବସ । ପ୍ରଭୁ ହନୁମାନଙ୍କର ଜନ୍ମ ଦିବସ ପ୍ରାୟ ପ୍ରତି ଗାଁ ମନ୍ଦିରରେ ଗ୍ରାମ କୋଠ ଘରେ ମହାଡମ୍ବରରେ ପାଳନ କରାଯାଇଥାଏ । ହନୁମାନଙ୍କ ଚାଳିଶା ୧୦୮ ଥର ଲେଖାଏଁ ପାଠ କରାଯାଏ ଏବଂ ତା' ସହିତ ସୁନ୍ଦରକାଣ୍ଡ ମଧ୍ୟ ପାଠ ହୁଏ । ହୋମଯଜ୍ଞ, ସଂକୀର୍ତ୍ତନରେ ସହର ଓ ଗ୍ରାମ ସବୁ କମ୍ପି ଉଠେ ।

କ୍ୱାର୍ଟର ନଂ- ୧ ବି - ୨୦
ଦେଉଳବେଡା କଲୋନୀ
ତାଳଚେର



# ଏକାମ୍ର କ୍ଷେତ୍ରରେ ବାସନ୍ତିକ ରଥଯାତ୍ରା

**ଅଧ୍ୟାପକ ପବିତ୍ର ମୋହନ ବାରିକ**

ଧର୍ମ, ସଂସ୍କୃତି ଓ ଐତିହ୍ୟର ସମୁଜ୍ଜ୍ୱଳ ଗନ୍ତାଘର ଭୁବନମୋହିନୀ ତଥା ମନ୍ଦିର ମାଳିନୀ ଭୁବନେଶ୍ୱର । ଏକ ଶାଶ୍ୱତ ପୁଣ୍ୟକ୍ଷେତ୍ର ଭାବେ ପୁରାଣରେ ଭୁବନେଶ୍ୱରର ମାହାତ୍ମ୍ୟ ଉଲ୍ଲେଖ ରହିଛି । ଏ କ୍ଷେତ୍ରରେ ଭଗବାନ ତ୍ରିଭୁବନେଶ୍ୱର ଏକ ଶିବଲିଙ୍ଗ ସ୍ଥାପନ କରିଥିଲେ । ତେଣୁ ଏହାର ଏପରି ନାମକରଣ କରାଯାଇଥିବା ବିଶ୍ୱାସ କରାଯାଏ । 'କପିଳ ସଂହିତାର' ବର୍ଣ୍ଣନା ଅନୁଯାୟୀ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁଃବର୍ଗ ପ୍ରଦାନ କରୁଥିବା ଏକ ଆମ୍ରବୃକ୍ଷ ଏହି କ୍ଷେତ୍ରରେ ବିଦ୍ୟମାନ ଥିଲା । ତେଣୁ ଏହା ଏକାମ୍ର କାନନ ବା ଏକାମ୍ର କ୍ଷେତ୍ର ନାମରେ ପ୍ରସିଦ୍ଧି ଲାଭ କରିଆସୁଅଛି । ସେହି ଆମ୍ରବୃକ୍ଷ ମୂଳରେ ପ୍ରତିଷ୍ଠିତ ହୋଇ ପୂଜା ପାଇ ଆସୁଥିଲେ ପ୍ରଭୁ ଏକାମ୍ରେଶ୍ୱର । ଭୁବନେଶ୍ୱର ଚକ୍ରକ୍ଷେତ୍ର, ଶାମ୍ଭବ କ୍ଷେତ୍ର ଓ ଉତ୍କଳ ବାରଣାସୀ ନାମରେ ମଧ୍ୟ ପରିଚିତ । ଏକାମ୍ରକ୍ଷେତ୍ର ବା ଏକାମ୍ରକାନନ ସଂପର୍କରେ ଅନେକ ପୁରାଣରେ ଉଲ୍ଲେଖ ଅଛି ଯଥା- ସ୍କନ୍ଦ ପୁରାଣ, କପିଳ ସଂହିତା, ଏକାମ୍ର ପୁରାଣ ଇତ୍ୟାଦି । ମହର୍ଷି ବ୍ୟାସଙ୍କ ବିରଚିତ ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଅନ୍ତର୍ଗତ ପୁରୁଷୋତ୍ତମ ମାହାତ୍ମ୍ୟର ଦ୍ୱାଦଶ ଅଧ୍ୟାୟରେ ଏକାମ୍ରକ୍ଷେତ୍ର ଓ ଏହାର ଅଧିଷ୍ଠାତା ଦେବତା କୋଟି ଲିଙ୍ଗେଶ୍ୱର ବା ବର୍ତ୍ତମାନର ଲିଙ୍ଗରାଜ ମହାପ୍ରଭୁଙ୍କ ସଂପର୍କରେ ଅନେକ ବର୍ଣ୍ଣନା ଦେଖିବାକୁ ମିଳେ । ପୁରୁଷୋତ୍ତମ ମାହାତ୍ମ୍ୟରେ ବର୍ଣ୍ଣିତ ଅଛି ଭଗବାନ ବିଷ୍ଣୁ ଗୟାସୁରକୁ ବଧ କରି ନିଜର ବିଜୟ ଗୌରବ ସ୍ୱରୂପ ପୁରୀରେ ଶଙ୍ଖ, ଭୁବନେଶ୍ୱରରେ ଚକ୍ର, ଯାଜପୁରରେ ଗଦା, କୋଣାର୍କରେ ପଦ୍ମ ଅବସ୍ଥାପିତ କଲେ । ତେଣୁ ପୁରୀ ଶଙ୍ଖକ୍ଷେତ୍ର, ଯାଜପୁର ଗଦା କ୍ଷେତ୍ର, କୋଣାର୍କ ପଦ୍ମକ୍ଷେତ୍ର ଓ ଭୁବନେଶ୍ୱର ଚକ୍ରକ୍ଷେତ୍ର ରୂପେ ମର୍ଯ୍ୟାଦା ଓ ସମ୍ମାନ ଲାଭ କଲା । ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଏ କ୍ଷେତ୍ରର ମାହାତ୍ମ୍ୟ ଅତୁଳନୀୟ ଅଟେ । ଭୁବନେଶ୍ୱରର ପୂର୍ବ ଦିଗରେ ପ୍ରାଚୀନ କଳିଙ୍ଗ ନଗରର ଧ୍ୱଂସାବଶେଷ ଶିଶୁପାଳଗଡ଼, ପଶ୍ଚିମରେ ଐତିହ୍ୟ ବିମଣ୍ଡିତ ଖଣ୍ଡଗିରି-ଉଦୟଗିରି, କଳିଙ୍ଗ ସମ୍ରାଟ୍ ମହାମେଘବାହନ ଐର ଖାରବେଳଙ୍କ ଦ୍ୱାରା ଖୋଦିତ



ଗୁମ୍ଫା ସମୂହ । ଏହାର ସାମରିକ ସୁରକ୍ଷା ନିମନ୍ତେ ଚତୁଃପାର୍ଶ୍ୱରେ ଚାରୋଟି ଗଡ଼ ଅବସ୍ଥିତ ଥିଲା । ଏହି ଚାରୋଟି ଗଡ଼ ଯଥା – ସିଂହଗଡ଼, ଶିଶୁପାଳ ଗଡ଼, କପିଳ ପ୍ରସାଦ ଓ ନୂଆପଲ୍ଲୀ। ସିଂହଗଡ଼ର ଭଗ୍ନସ୍ତୂପ ଉପରେ ବର୍ତ୍ତମାନର ରାଜ୍ୟ ସଂଗ୍ରହାଳୟ ଦଣ୍ଡାୟମାନ ଅଟେ । ଏହି ସିଂହଗଡ଼ର ଅନତି ଦୂରରେ ବୃହଗଡ଼ ଆଧୁନିକ ବଡ଼ଗଡ଼ ଅବସ୍ଥିତ । ଭୁବନେଶ୍ୱରର ଦକ୍ଷିଣ ପୂର୍ବ ଦିଗରେ ଗନ୍ଧବତୀ ବା ଆଧୁନିକ ଗଙ୍ଗୁଆ ନଦୀର ଅପର ପାର୍ଶ୍ୱରେ ଶିଶୁପାଳଗଡ଼ର ଧ୍ୱଂସାବଶେଷ ଦେଖିବାକୁ ମିଳେ । ଶିଶୁପାଳଗଡ଼ ନିକଟରେ ଐତିହାସିକ ଧଉଳି ପାହାଡ଼ ଓ ଦୟା ନଦୀ । ଭୁବନେଶ୍ୱରର ଐତିହ୍ୟ ଓ ଇତିହାସ ଓଡ଼ିଶାର ସାଂସ୍କୃତିକ ବିଭବକୁ ମହିମା ମଣ୍ଡିତ କରୁଅଛି ।

ଭୁବନେଶ୍ୱରର କ୍ଷେତ୍ରାଧିପତି ପରମଯୋଗୀ ଶ୍ରୀଲିଙ୍ଗରାଜ ମହାପ୍ରଭୁ । ଚୈତ୍ରଶୁକ୍ଲ ଅଷ୍ଟମୀ ଯାହା ଅଶୋକାଷ୍ଟମୀ ନାମରେ ବିଦିତ । ଏହି ଦିନ ଲିଙ୍ଗରାଜ ଦେବଙ୍କର ଅଶୋକାଷ୍ଟମୀ ରଥଯାତ୍ରା ଅନୁଷ୍ଠିତ ହୁଏ । ଗବେଷକମାନଙ୍କ ମତରେ କେଶରୀ ବଂଶୀୟ ରାଜାମାନଙ୍କ ସମୟରୁ ଏହିଯାତ୍ରା ଆୟୋଜିତ ହୋଇଆସୁଅଛି । ଅଶୋକାଷ୍ଟମୀ ଦିନ ଭୁବନେଶ୍ୱରରେ ଶ୍ରୀଲିଙ୍ଗରାଜ ଦେବଙ୍କର ରଥଯାତ୍ରା ଆୟୋଜିତ ହୁଏ । ରଥଯାତ୍ରା ଭାରତୀୟ ସଂସ୍କୃତିରେ ଅତି ପ୍ରାଚୀନ । ଓଡ଼ିଶାକ୍ଷେତ୍ରରେ ବିବଚେନା କଲେ ଜଣାଯାଏ ଓଡ଼ିଶାରେ ପ୍ରାୟ ବର୍ଷକୁ ଚାରୋଟି ରଥଯାତ୍ରା ହେଉଥିବାର ଦେଖାଯାଏ। ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ନବଦିନାତ୍ମକ ଶ୍ରୀଗୁଣ୍ଡିଚା ରଥଯାତ୍ରା, ଅର୍କକ୍ଷେତ୍ର କୋଣାର୍କରେ ମାଘ ସପ୍ତମୀ ତିଥିରେ ସୌର ରଥଯାତ୍ରା ହେଉଥିଲା, ଯାହା ବର୍ତ୍ତମାନ ଅବଲୁପ୍ତ । ବିରଜା କ୍ଷେତ୍ରରେ ଆଶ୍ୱିନ ମାସ ଶୁକ୍ଳପକ୍ଷ ପ୍ରତିପଦାଠାରୁ ମହାନବମୀ ପର୍ଯ୍ୟନ୍ତ ବିରଜାଦେବୀଙ୍କର ନବଦିନାତ୍ମକ ସିଂହଧ୍ୱଜ ବା ମାୟାରଥ ବା ବିଜୟା ରଥଯାତ୍ରା ଅନୁଷ୍ଠିତ ହୁଏ। ଏକାମ୍ର କ୍ଷେତ୍ର ଭୁବନେଶ୍ୱରରେ ଚୈତ୍ରମାସ ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ପ୍ରଭୁ ଲିଙ୍ଗରାଜଙ୍କର ଅଶୋକାଷ୍ଟମୀ ରୁକୁଣା ରଥଯାତ୍ରା ଆୟୋଜିତ ହୁଏ । ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରୁ ଦ୍ୱାଦଶୀ ତିଥି ପର୍ଯ୍ୟନ୍ତ ପାଞ୍ଚଦିନ ବ୍ୟାପୀ ଶ୍ରୀଲିଙ୍ଗରାଜଙ୍କର ବାସନ୍ତିକ ରଥଯାତ୍ରା ଆୟୋଜିତ ହୁଏ । ସ୍କନ୍ଦପୁରାଣ, ଲିଙ୍ଗରାଜ ପୁରାଣ, ବ୍ରହ୍ମ ସଂହିତା, ଶିବ ପୁରାଣ, କପିଳ ସଂହିତା ଓ ଏକାମ୍ର ଚନ୍ଦ୍ରିକା ପ୍ରଭୃତିରେ ଏକାମ୍ର କ୍ଷେତ୍ରର ମାହାତ୍ମ୍ୟ ଓ ଅଶୋକାଷ୍ଟମୀ ରଥଯାତ୍ରା ସଂପର୍କରେ ବର୍ଣ୍ଣିତ ଅଛି । ପ୍ରଭୁ ଲିଙ୍ଗରାଜଙ୍କର ଏହି ଅଶୋକାଷ୍ଟମୀ ରଥଯାତ୍ରାରୁକ୍ମା ରଥ ବା ଅପଭ୍ରଂଶ ହୋଇ ରୁକୁଣା ରଥଯାତ୍ରା ବୋଲି ସର୍ବଜନବିଦିତ। ପୁରାଣରେ ରୁକୁଣା ରଥର ନାମକରଣ ସଂପର୍କରେ ଉଲ୍ଲେଖ ଅଛି । ପୌରାଣିକ କଥାବସ୍ତୁ ଅନୁଯାୟୀ ବ୍ରହ୍ମାଙ୍କର ବରରେ ବଳିଆନ୍ ତ୍ରିପୁରାସୁରର ଦୌରାତ୍ମ୍ୟରେ ଦେବତାମାନେ ଅତିଷ୍ଠ ହୋଇ ପଡ଼ିଲେ । ଏଥିରୁ ରକ୍ଷା ପାଇବା ପାଇଁ ପରଂବ୍ରହ୍ମଙ୍କ ପ୍ରାର୍ଥନା କଲେ । ପରଂବ୍ରହ୍ମ ଦେବତାମାନଙ୍କ ସମ୍ମୁଖରେ ରୁଦ୍ର ରୂପରେ ବିରାଜମାନ ହେଲେ ଏବଂ ଅସୁରକୁ ବଧ କରିବା ପାଇଁ ଯୁଦ୍ଧ ସାମଗ୍ରୀ ପ୍ରସ୍ତୁତ କରିବା ନିମନ୍ତେ ନିର୍ଦ୍ଦେଶ ଦେଲେ । ଦେବତାମାନେ ବସୁମତୀ ପୃଥିବୀକୁ ରଥ, ବ୍ରହ୍ମାଙ୍କୁ ସାରଥି, ସୂର୍ଯ୍ୟଚନ୍ଦ୍ରଙ୍କୁ ଚକ୍ର, ବାସୁକୀନାଗକୁ ଧନୁରତୁଣୀ ଏହିଭଳି ସମସ୍ତ ଦେବତାମାନେ ନିଜ-ନିଜର ଶକ୍ତିର ପ୍ରୟୋଗରେ ଏକ ରଥ ନିର୍ମାଣ କରି ଶିବ ଠାକୁରଙ୍କୁ ଅର୍ପଣ କଲେ । ଶିବଠାକୁର ଏହି ରଥରେ ଆରୋହଣ କରିବାରୁ ଏହା ପାତାଳଗାମୀ ହେବାକୁ ଲାଗିଲା । କିନ୍ତୁ ପରମଯୋଗୀ ଶିବ ମହାମାୟାଙ୍କୁ ସ୍ମରଣ କରିଥିବାରୁ ଦେବୀ ଅଦୃଶ୍ୟ ଶକ୍ତି ରୂପେ ରଥରେ ବିଦ୍ୟମାନ ହେଲେ । ଶିବ ରଥାରୁଢ଼ ହୋଇ ତ୍ରିପୁରାସୁରକୁ ବଧ କଲେ । ସୃଷ୍ଟିର ମଙ୍ଗଳ ପାଇଁ ସେହିଦିନଠାରୁ ଶିବ ରଥାରୁଢ଼ ହୋଇଥିଲେ । ମହାଶକ୍ତି ମହାମାୟା ରୁକ୍ମ (ସ୍ୱର୍ଣ୍ଣବର୍ଣ୍ଣଙ୍କର ସକଳ ଶକ୍ତିରେ ପୂର୍ଣ୍ଣ ଥିବା ଏହି ରଥକୁ) ରୁକ୍ମ ରଥ ବୋଲି ନାମିତ କରାଯାଇଥିଲା । ରୁକ୍ମଣା ପରେ ଅପଭ୍ରଂଶ ହୋଇ ରୁକୁଣା ରଥ ନାମରେ ନାମିତ ହେଲା । ଅଶୋକାଷ୍ଟମୀ ଦିନ ଲିଙ୍ଗରାଜ ମହାପ୍ରଭୁ ଯେଉଁ ରଥରେ ବିଜେ କରି ଯାତ୍ରା କରନ୍ତି, ତାକୁ ଦେବଦଳନ ବା ରୁକୁଣା ବୋଲି କୁହାଯାଏ । ଏହି ରଥ ଦେବତାମାନଙ୍କ ସହଯୋଗ ବା ସମଷ୍ଟିରେ ନିର୍ମିତ ହୋଇଥିବାରୁ ଏହାକୁ ଦେବଦଳନ ବୋଲି କୁହାଯାଏ ।

ଅନ୍ୟ ଏକ ପୌରାଣିକ ତଥ୍ୟରୁ ଜଣାଯାଏ ଯେ, ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର ରାବଣକୁ ବଧ କରି ଅଯୋଧ୍ୟାକୁ ଫେରି ଆସିଥିଲେ କିନ୍ତୁ ସେହି ଦୋଷ ପାଇଁ ତାଙ୍କ ମନରେ ଅସ୍ଥିରତା ଲାଗି ରହିଥିଲା । କୁଳଗୁରୁ ବଶିଷ୍ଠଙ୍କ ପରାମର୍ଶକ୍ରମେ ପ୍ରଭୁ ଶ୍ରୀରାମ ଗୁପ୍ତକାଶୀ ଏକାମ୍ର କ୍ଷେତ୍ରରେ ଶିବଠାକୁରଙ୍କୁ ପୂଜାର୍ଚ୍ଚନା କଲେ ଏବଂ ରାମେଶ୍ୱର ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ ।

ଭଗବାନ ରାମଙ୍କ ସହିତ ଅନୁଜ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ମଧ୍ୟ ଏକାମ୍ର କ୍ଷେତ୍ରରେ ପଦାର୍ପଣ କରିଥିଲେ । ରାମେଶ୍ୱର ମନ୍ଦିର ଅନତି ଦୂରରେ ଭରତେଶ୍ୱର, ଲକ୍ଷ୍ମଣେଶ୍ୱର ଓ ଶତ୍ରୁଘ୍ନେଶ୍ୱର ମନ୍ଦିର ଅବସ୍ଥିତ । ରାମଚନ୍ଦ୍ରଙ୍କ ଯଜ୍ଞ ସମ୍ଭବ ଝର ଯାହା ଅଶୋକ ଝର ନାମରେ ପରିଚିତ । ଏହା ଏକାମ୍ର କ୍ଷେତ୍ରର ଅଷ୍ଟମ ତୀର୍ଥ ରୂପେ ନାମିତ । ରାମଚନ୍ଦ୍ରଙ୍କ ପରମଭକ୍ତିରେ ସନ୍ତୁଷ୍ଟ ହୋଇ ପ୍ରଭୁ ଲିଙ୍ଗରାଜ ତାଙ୍କୁ ବର ପ୍ରଦାନ ନିମନ୍ତେ ଚୈତ୍ରଶୁକ୍ଳ ଅଷ୍ଟମୀ ତିଥିରେ ରଥାରୂଢ଼ ହୋଇ ରାମେଶ୍ୱରଙ୍କ ପର୍ଯ୍ୟନ୍ତ ଆସିଥିଲେ ଏବଂ ସେହିଦିନଠାରୁ ଏକାମ୍ର କ୍ଷେତ୍ରରେ ରଥଯାତ୍ରା ପ୍ରଚଳିତ ହୋଇଆସୁଅଛି । ଏହି ରଥ ନିର୍ମାଣ କରିବା ପାଇଁ ମାଘମାସ ଶ୍ରୀପଞ୍ଚମୀ ଦିନ ଲିଙ୍ଗରାଜ ମହାପ୍ରଭୁ ସ୍ୱୟଂ ବିମାନସ୍ଥ ହୋଇ ବନ ମଧ୍ୟକୁ ଯାତ୍ରା କରନ୍ତି । ଠାକୁରଙ୍କ ଶୋଭାଯାତ୍ରାରେ ବଡ଼ତୋଟାକୁ ନିଆଯାଇ ଏକ ଆମ୍ବଗଛକୁ ଚୋଟ ମରାଯାଇ କାଠ ଅନୁକୂଳ କରାଯାଏ । ରଥ ନିର୍ମାଣ କାର୍ଯ୍ୟ ଦିନ ବିଶେଷ ପୂଜାର୍ଚ୍ଚନା କରାଯିବାର ବ୍ୟବସ୍ଥା ରହିଛି । ଚୈତ୍ର ଶୁକ୍ଳ ଅଷ୍ଟମୀ ମଧ୍ୟରେ ରଥର ସମସ୍ତ ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଥାଏ । ସପ୍ତମୀଦିନ ରାତ୍ରରେ ରଥ ପ୍ରତିଷ୍ଠା କରାଯାଏ ଏବଂ ଅଷ୍ଟମୀ ଦିନ ମହାପ୍ରଭୁ ରଥାରୁଢ ହୋଇ ଯାତ୍ରା ଆରମ୍ଭ କରନ୍ତି । ପ୍ରତିଷ୍ଠା ନିମନ୍ତେ କେଦାରଗୌରୀ ନିକଟସ୍ଥ ସିଦ୍ଧକୁଣ୍ଡ ବା ମରିଚ କୁଣ୍ଡର ପ୍ରଥମ କଳସ ପବିତ୍ର ଜଳ ବିଧିମୁତାବକ ଅଣାଯାଇ ପ୍ରତିଷ୍ଠମଣ୍ଡପରରେ ରଥକୁ ପ୍ରତିଷ୍ଠା କରାଯାଏ ।

ଏହି କୁଣ୍ଡର ପରବର୍ତ୍ତୀ କଳସୀଜଳ ବନ୍ଧ୍ୟାନାରୀମାନଙ୍କର ବ୍ୟବହାର ପାଇଁ ଉଦ୍ଦିଷ୍ଟ ଥାଏ । ବିଶ୍ୱାସ ଅଛି ଯେ, ଏହି ଜଳରେ ବନ୍ଧ୍ୟାନାରୀମାନେ ସ୍ନାନକଲେ ସନ୍ତାନଲାଭ କରିଥାନ୍ତି । ଆଉ ମଧ୍ୟ ବିଶ୍ୱାସ ଅଛି ଯଦି କୌଣସି ବୃକ୍ଷରେ ଫଳ ଆସୁ ନଥାଏ କିମ୍ବା ଫଳ ଝଡ଼ି ପଡୁଥାଏ ଏହି ଜଳ ସହିତ ଶିବଙ୍କର ପାଦୋଦକ ମିଶାଇ ସିଞ୍ଚନ କଲେ ବୃକ୍ଷରେ ଫଳ ରହେ ଏବଂ ଫଳବତୀ ମଧ୍ୟ ହୋଇଥାଏ । ଅଶୋକାଷ୍ଟମୀ ରଥଯାତ୍ରା ଦିନ ଲିଙ୍ଗରାଜ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ଚନ୍ଦ୍ରଶେଖରଙ୍କ ବାସୁଦେବ ଓ ରୁକ୍ମଣୀଙ୍କୁ ମଧ୍ୟ ମନ୍ଦିରରୁ ଅଣାଯାଇ ରଥାରୁଢ଼ କରାଯାଏ । । ଚନ୍ଦ୍ରଶେଖର ବାସୁଦେବ ଓ ରୁକ୍ମିଣୀଙ୍କ ମୂର୍ତ୍ତି ଚତୁର୍ଭୁଜ ବିଶିଷ୍ଟ ପିତଳରେ ନିର୍ମିତ । ରଥ ଉପରେ ଚନ୍ଦ୍ରଶେଖର ଓ ବାସୁଦେବଙ୍କ ମଝିରେ ରୁକ୍ମିଣୀ ଅବସ୍ଥାନ କରିଥାନ୍ତି । ଏହା ବ୍ୟତୀତ କାଷ୍ଠ ନିର୍ମିତ ବୃଷଭ ମୂର୍ତ୍ତି ଓ ରଥର ସାରଥି ବ୍ରହ୍ମାଙ୍କର ମୂର୍ତ୍ତି ମଧ୍ୟ ରଥ ଉପରେ ପ୍ରତିଷ୍ଠା କରାଯାଏ । ଅଶୋକାଷ୍ଟମୀ ଦିନ ଶ୍ରଦ୍ଧାଳୁମାନେ ଅତି ଆନନ୍ଦରେ ଓ ଭକ୍ତିପୂତ ଚିତ୍ତରେ ରଥଦାଣ୍ଡରେ ରଥଟାଣି ରାମେଶ୍ୱର ବା ମାଉସୀ ମା' ମନ୍ଦିର ନିକଟରେ ଥିବା ଦେବସଭା ବଟବୃକ୍ଷ ପର୍ଯ୍ୟନ୍ତ ଟାଣନ୍ତି । ରାସ୍ତାରେ ଅସୁର କିଆରୀ ନିକଟରେ ପଣା ଓ ମୁଆଁ ଭୋଗ କରାଯାଏ । ମହାପ୍ରଭୁ ଲିଙ୍ଗରାଜଙ୍କ ପୁରାଣ, ଇତିହାସ ପ୍ରସିଦ୍ଧ ଅଶୋକାଷ୍ଟମୀ ରଥଯାତ୍ରାରେ ସେବା ଯୋଗାଇ ଦେବା ପାଇଁ ଭୁବନେଶ୍ୱରରେ ଅନେକ ମଠ ପ୍ରତିଷ୍ଠିତ ହୋଇଥିଲା । ପ୍ରାୟତଃ ମଠଗୁଡ଼ିକ ଆଜି ଜରାଜୀର୍ଣ୍ଣ ଓ ସ୍ଥାଣୁ ଅବସ୍ଥାରେ ପଡ଼ିରହିଛି । ତଥାପି ସେମାନେ ବିଧିରକ୍ଷା କରି ଯଥାସାଧ୍ୟ ସହଯୋଗ କରି ଆସୁଛନ୍ତି । ରଥଯାତ୍ରା ନିମିତ୍ତ ଶୁଖିଲା ଭୋଗ ପ୍ରସ୍ତୁତି କରିବା ଦାୟିତ୍ୱ ରହିଛି ପର୍ବଯାତ ବିଶୋଇଙ୍କର । ରଥଯାତ୍ରା ସମୟରେ କପାଳୀ ମଠ ସମ୍ମୁଖରେ ପ୍ରଭୁ ଲିଙ୍ଗରାଜଙ୍କର ଭୋଗଲାଗି କରାଯାଏ । ଅଶୋକାଷ୍ଟମୀ ରଥଯାତ୍ରା ଦିନ ଗୋପାଳ ତୀର୍ଥ ମଠ ପଂକ୍ତିଭୋଗ ଯୋଗାଇ ଦେବାର ବ୍ୟବସ୍ଥା ରହିଛି । ଶିବତୀର୍ଥମଠ ପ୍ରଭୁଙ୍କର ଚାମର ସେବା ଦାୟିତ୍ୱ ବହନ କରିଥାନ୍ତି । ଅଶୋକାଷ୍ଟମୀ ରଥଯାତ୍ରା ଦିନ ପ୍ରତ୍ୟୁଷରୁ ମଙ୍ଗଳ ଆରତୀ, ଅବକାଶ, ସାହାଣମେଳା ପରେ ଛାମୁ ପରିଷ୍କାର, ମହାସ୍ନାନ ବେଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଶ୍ରୀଜୀଉମାନଙ୍କ ସକାଳ ଧୂପ ପ୍ରଭୃତି ବିଧି ସମାପନ କରାଯାଇଥାଏ । ମଧ୍ୟାହ୍ନ ଯାତ୍ରା ପୂଜା ପରେ ଶ୍ରୀଜୀଉମାନଙ୍କୁ ରଥର ଚାରିପାଖେ ପରିକ୍ରମା କରାଇବା ପରେ ବିରାଜମାନ କରାଯାଇଥାଏ । ଏହାପରେ ହରିବୋଲ, ହୁଳହୁଳି, ଶଙ୍ଖ, ସଂକୀର୍ତ୍ତନ ଧ୍ୱନିରେ ଭକ୍ତମାନେ ରୁକୁଣାରଥକୁ ମାଉସୀ ମା ମନ୍ଦିର ନିକଟକୁ ଟାଣି ନେଇଥାନ୍ତି । ରଥଟଣା ପୂର୍ବରୁ ପାର୍ବତୀ ଠାକୁରାଣୀ ମନ୍ଦିରରୁ ପାଲିଙ୍କିରେ ବସି ରଥଖଳାରେ ଉପସ୍ଥିତ ହୋଇ ରଥକାଠ ଚୋରି କରନ୍ତି । ଏହାକୁ ଦଅଣା ଚୋରି ବୋଲି କୁହାଯାଏ । ଲିଙ୍ଗରାଜ ମହାପ୍ରଭୁ ଭଉଣୀ ରୁକ୍ମଣୀକୁ ସାଙ୍ଗରେ ନେଇ ରଥଯାତ୍ରା କରିଥିବାରୁ ଦେବୀ ପାର୍ବତୀ କ୍ଷୋଭ ପ୍ରକାଶ କରି ପ୍ରଭୁଙ୍କୁ ମନ୍ଦିର ପ୍ରବେଶ ନିଷେଧ କରି ମନ୍ଦିର ଦ୍ୱାର ବନ୍ଦ ରଖନ୍ତି । ମହାପ୍ରଭୁ ଲିଙ୍ଗରାଜ ଚନ୍ଦନଯାତ୍ରାରେ ବାଇଶି ଦିନ ଠାକୁରାଣୀଙ୍କୁ ସଙ୍ଗରେ ନେବାକୁ ପ୍ରତିଶ୍ରୁତି ଦେବାରୁ ଦେବୀ ମନ୍ଦିର ଦ୍ୱାର ଉନ୍ମୁକ୍ତ କରନ୍ତି । ପୁରୁଖା

ଲୋକମାନଙ୍କଠାରୁ ଶୁଣାଯାଏ ତତ୍କାଳୀନ ସମୟରେ ଏହି ଅଶୋକାଷ୍ଟମୀ ରଥଯାତ୍ରା ଦେଖିବା ପାଇଁ କପିଳପ୍ରସାଦ, ପୋଖରୀପୁଟ, ବଡ଼ଗଡ଼, ଲକ୍ଷ୍ମୀସାଗର, ବାଲିଅନ୍ତା, ବାଲିପାଟଣା, ଘାଟିକିଆ, ପାଇକରାପୁର, କୁହାବୋତଣ୍ଡା, ଓରକୋଳ ପ୍ରଭୃତି ଭୁବନେଶ୍ୱର ଆଖପାଖ ଗ୍ରାମରୁ ବହୁ ସଂଖ୍ୟାରେ ଶ୍ରଦ୍ଧାଳୁମାନେ ଆସୁଥିଲେ । ସେସମୟରେ ଯାତ୍ରା ପାଞ୍ଚଦିନ ହେଉଥିଲେ ମଧ୍ୟ ବ୍ୟବସାୟୀଙ୍କ କାରବାର ଏକମାସ ପର୍ଯ୍ୟନ୍ତ ଚାଲୁଥିଲା । ଅଶୋକାଷ୍ଟମୀ ରଥଯାତ୍ରାର ଅନ୍ୟ ଏକ ଚମତ୍କାର ପୌରାଣିକ ଆଲେଖ୍ୟ ଶୁଣିବାକୁ ମିଳେ । ସୀତା ଠାକୁରାଣୀ ଦଶାନନ ରାବଣ ଦ୍ୱାରା ଲଙ୍କା କଟକରେ ବନ୍ଦୀ ଥିବା ସମୟରେ ନିଜର ଶୋକ ଦୂରୀଭୁତ ପାଇଁ ଚୈତ୍ରଶୁକ୍ଳ ଅଷ୍ଟମୀ ଦିନ ଆଠଗୋଟି ଅଶୋକ କଳିକା ସେବନ କରିଥିଲେ । ଅଶୋକାଷ୍ଟମୀ ଦିନ ଭକ୍ତ ଓ ଧର୍ମପ୍ରାଣ ବ୍ୟକ୍ତିମାନେ ଶ୍ରଦ୍ଧାର ସହ ଅଶୋକ କଳିକା ଭକ୍ଷଣ କରିଥାନ୍ତି । ଅଶୋକାଷ୍ଟମୀ ଅବସରରେ ଅଶୋକ କଳିକା ସେବନ କରି ରାମେଶ୍ୱର ମନ୍ଦିର ପରିସରରେ ଥିବା ଅଶୋକଝରରେ ସ୍ନାନ କଲେ ମହାପୁଣ୍ୟ ମିଳେ ବୋଲି ବିଶ୍ୱାସ କରାଯାଏ ।

ମାଉସୀ ମା' ମନ୍ଦିରରେ ଶ୍ରୀଜୀଉମାନେ ପାଞ୍ଚଦିନ ଅବସ୍ଥାନ କରନ୍ତି । ଏହି ସମୟରେ ରାମେଶ୍ୱର ମନ୍ଦିର ପରିସର ଉତ୍ସବମୁଖର ହୋଇପଡ଼େ । ନୃତ୍ୟ, ଗୀତ, ସଂଗୀତର ଏକ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି ହୋଇଥାଏ । ଏହି ସମୟରେ ମନ୍ଦିର ପରିସର ଲୋକାରଣ୍ୟ ହୋଇଥାଏ । ଦ୍ୱାଦଶୀଦିନ ଶ୍ରୀଜୀଉମାନେ ମାଉସୀ ମା'ମନ୍ଦିରରୁ ସ୍ୱମନ୍ଦିରକୁ ପ୍ରତ୍ୟାର୍ବନ କରିଥାନ୍ତି । ଏହାକୁ ବାହୁଡ଼ା ବା ଓଲଟା ରଥ କୁହାଯାଏ । ବାହୁଡ଼ା ଦିନ ରଥର ମୁହଁ ସମ୍ମୁଖକୁ ନ ବୁଲାଇ ପଛ ପାଖରେ ଅନ୍ୟ ଏକ ମୁହଁ ଖୋଲାଯାଏ ତାହା ସମ୍ମୁଖ ଦ୍ୱାର ହୁଏ । ରଥ ନବୁଲାଇ ପଛ ପାଖେ ନୂତନ ଦ୍ୱାର ଖୋଲାଯାଉଥିବାରୁ ରୁକୁଣାରଥ ଅଣ ଲେଉଟା । ଲୋକକଥାରେ ରହିଛି ପୂର୍ବେ ଝିଅମାନେ ବିଭା ହୋଇ ଶାଶୁଘର ଯିବା ସମୟରେ ଯେଉଁ ବିବାହ କାନ୍ଦଣା ବୋଲି ସେଥିରେ ରୁକୁଣା ରଥ କଥା ଉଲ୍ଲେଖ ଅଛି ।

ରୁକୁଣା ରଥ ତ ଅଣ ଲେଉଟା
ଆଉ କି ଦେଖିବ ଜନମ କୋଠା, ମୋ'ରି ବୋଉ ।

ପ୍ରତିବର୍ଷ ଅଶୋକାଷ୍ଟମୀ ଦିନ ଖୋର୍ଦ୍ଧାଜିଲ୍ଲାର ନିରାକାରପୁରଠାରୁ ତିନି କିମି. ଦୂରରେ ଥିବା ଡ଼ିଆ ଗ୍ରାମରେ କପିଳେଶ୍ୱର ଦେବଙ୍କର ଏକ ରଥଯାତ୍ରା ଆୟୋଜିତ ହୁଏ ଏବଂ ଭକ୍ତମାନେ ରାତ୍ରରେ ମଧ୍ୟ ରଥ ଟାଣୁଥାନ୍ତି । ଏଠାକାର ରଥଯାତ୍ରା ବୌଦ୍ଧ ପରମ୍ପରା ସହିତ ଜଡ଼ିତ ଥିବାର ଗବେଷକମାନେ ମତବ୍ୟକ୍ତ କରନ୍ତି ।

ତେଣୁ ଯାହା ହେଉନା କାହିଁକି ଏକାମ୍ରକ୍ଷେତ୍ରର ବାସନ୍ତିକ ରଥଯାତ୍ରା ଓଡ଼ିଆ ଜାତିର ଐତିହ୍ୟ, ପରମ୍ପରା ଓ ସାଂସ୍କୃତିକ ବିଭବକୁ ଗୌରାବାନ୍ୱିତ କରୁଅଛି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪



# ସାର୍ବଜନୀନ ଶିକ୍ଷା ଓ ସାମାଜିକ ସଂସ୍କାର

**ରବିନ୍ ଖଣ୍ଡାୟତରାୟ**

ଶିକ୍ଷା ମାନବ ଜୀବନକୁ ମୂଲ୍ୟଯୁକ୍ତ କରିବା ସହିତ ଉତ୍ତମ ଶିକ୍ଷା ବଳରେ ଜଣେ ନିଜ ପାଇଁ ସମାଜରେ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଥାଏ। ଆଦିମ ଯୁଗରୁ ଅଧୁନା ଯୁଗ ଯାଏଁ ମାନବ ସଭ୍ୟତାର ବିକାଶ ପାଇଁ ଶିକ୍ଷାର ଅବଦାନ ଅବିସ୍ମରଣୀୟ ହୋଇ ରହିଛି ଆଉ ଆଗକୁ ରହିଥିବ ମଧ୍ୟ। ଭବିଷ୍ୟତର ସମ୍ଭାବନା ହେଉ କି ବର୍ତ୍ତମାନର ସ୍ୱପ୍ନ ସବୁର ଆଧାର ଶିଳା ହିଁ ଶିକ୍ଷା। ଯାହାପାଇଁ ମଣିଷ ସଫଳତାର ମୁକ୍ତା ସାଉଁଟିବାକୁ ସୁଯୋଗ ପାଇଥାଏ। ଶିକ୍ଷା ଉତ୍ତମ ବ୍ୟକ୍ତିତ୍ୱ ସୃଷ୍ଟି କରିଥାଏ, ଯାହାଙ୍କର ବଳିଷ୍ଠ ମାର୍ଗଦର୍ଶନରେ ସମାଜର ପ୍ରଗତି ସାଧିତ ହୋଇଥାଏ। ବିଦ୍ୟାଳୟ ଏକ କାର୍ଯ୍ୟାଳୟ ନୁହେଁ ମନ୍ଦିର, ଶିକ୍ଷାଦାନ କେବଳ ବୃତ୍ତି ନୁହେଁ ପୂଜା। ଶିକ୍ଷକ କେବଳ ବେତନଭୋଗୀ କର୍ମଚାରୀ ନୁହଁନ୍ତି ବରଂ ଆଦର୍ଶ, ଯାହାଙ୍କୁ ଛାତ୍ରଛାତ୍ରୀମାନେ ଅନୁସରଣ କରନ୍ତି ଏବଂ ତାଙ୍କଦ୍ୱାରା ପ୍ରଭାବିତ ମଧ୍ୟ ହୁଅନ୍ତି। ତେଣୁ ଗୁରୁଶିଷ୍ୟର ସମ୍ପର୍କ ଦୁନିଆରେ ନିଆରା। ଏହାଛଡା ବିଦ୍ୟାଳୟ, ମହାବିଦ୍ୟାଳୟ ଅଥବା ବିଶ୍ୱବିଦ୍ୟାଳୟ ପରିସରର ବାହାରେ ମଧ୍ୟ ଆମ ଜୀବନକୁ ଆହୁରି ଅନେକ ଗୁରୁ ପ୍ରଭାବିତ କରିଥାଆନ୍ତି, ଯାହାଙ୍କଠାରୁ ସାମାଜିକ ସଂସ୍କାର ତଥା ଉତ୍ତମ ମୂଲ୍ୟବୋଧର ଶିକ୍ଷା ମିଳିଥାଏ। ତେଣୁ ଶିକ୍ଷା ମନୁଷ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ ଆଉ ଏହା ଏକ ଜୀବନବ୍ୟାପୀ ପ୍ରକ୍ରିୟା। ଜନ୍ମରୁ ମୃତ୍ୟୁଯାଏଁ ଆମକୁ କିଛି ନା କିଛି ଅବଶ୍ୟ ଶିକ୍ଷା କରିବାକୁ ପଡ଼ିଥାଏ।

ଶିକ୍ଷା ହେଉଛି ଏକ ସାର୍ବଭୌମିକ ମାନବାଧିକାର। ଯାହା ମାଧ୍ୟମରେ ସର୍ବଦା ମାନବିକତା ଓ ସହିଷ୍ଣୁତା ଗୁଣକୁ ଗୁରୁତ୍ୱ ଦେଇ ମଣିଷ ନିଜର ସାମାଜିକ ପ୍ରତିବଦ୍ଧତା ପାଳନ କରିଥାଏ। ଏହିପରି ଚିନ୍ତନ ପ୍ରକ୍ରିୟା ତଥା ସୃଜନଶୀଳତାର ବିକାଶ ଏବଂ ନିୟନ୍ତ୍ରଣ ହୋଇଥାଏ ଆମ ପରିବେଶରୁ ପ୍ରାପ୍ତ ଶିକ୍ଷା ମାଧ୍ୟମରେ। ଆଉ ସାମୂହିକ ଶିକ୍ଷାରୁ ସାମାଜିକ ସଂସ୍କାର ଯେତିକି ମିଳେ ସେତିକି ପରିମାଣରେ ବହିପାଠରୁ ମିଳିପାରେ ନାହିଁ। ତେଣୁ ପ୍ରାରମ୍ଭିକ ଶିକ୍ଷା ହେଉ କି ପାର୍ଶ୍ୱ ପରିବେଶରୁ ଶିକ୍ଷା ସେଥିରେ ମାତୃଭାଷାର ହିଁ ପ୍ରାଧାନ୍ୟ ବେଶି ଥାଏ। କାରଣ ଆମ ପାର୍ଶ୍ୱ ପରିବେଶରେ ହିଁ ମାତୃଭାଷାର ହିଁ ବହୁଳ ବ୍ୟବହାର ହେଉଥାଏ। ଆଉ ଅନେକ ସମୟରେ କିଛି ନିଜସ୍ୱ ସମସ୍ୟାର ସମାଧାନର ରାସ୍ତା ଆମେ ନିଜ ସହିତ ନିଜେ କଥାହୋଇ, ତର୍ଜମା କରି ଅଥବା ମନେମନେ ସ୍ୱଗତୋକ୍ତି କରି ସମାଧାନ କରିଦେଇଥାଉ। ତେଣୁ ପରିବାର ପରିବେଶରେ ଭାବର ଆଦାନ ପ୍ରଦାନ ପାଇଁ ମାତୃଭାଷା ସର୍ବାଦୌ ଗ୍ରହଣୀୟ। କାରଣ ଆମ ଚାରିପାଖରେ ପୂରି ରହିଥିବା ଭାଷାର ବିଭବକୁ ବିଖଣ୍ଡିତ କରାଇ ନୂଆ ଭାଷାଟିଏ ପରିବେଷଣ କରାଇଲେ ତାହା ଯେ ସମସ୍ତଙ୍କ ପାଇଁ ଗ୍ରହଣୀୟ ହେବନାହିଁ ତାହା ନିଶ୍ଚିତ। ମାଆର ଭାଷା ଛୋଟଛୁଆଟିଏ ଯେମିତି ବୁଝେ, ଅପାଠୁଆ ପୁଅଟିଏ ସେମିତି ବୁଝେ ଆଉ ପାଠୁଆ ପଣ୍ଡିତମାନେ ମଧ୍ୟ ସେମିତି ବୁଝିଥାଆନ୍ତି।

ଆମର ସୃଜନଶୀଳତା, ଆମର ଚିନ୍ତନ ପ୍ରକ୍ରିୟା ସବୁକିଛି ନିୟନ୍ତ୍ରିତ ହୋଇଥାଏ ଶିକ୍ଷା ମାଧ୍ୟମରେ । ଆଉ ସବୁଠାରୁ ବଡ଼ କଥା ହେଲା, ଉଚ୍ଚତର ତଥା ବୈଷୟିକ ଶିକ୍ଷାକୁ ବାଦ୍ ଦେଲେ ପ୍ରାଥମିକ ଶିକ୍ଷା ମାତୃଭାଷାରେ ହିଁ ସହଜ ହୋଇଥାଏ। ତାହା ଏଇଥିପାଇଁ ଯେ, ସବୁବେଳେ ଭାଷାର ପ୍ରୟୋଗ ଦୁଇଟି ସ୍ତରରେ। ଗୋଟିଏ ଦୈନନ୍ଦିନ ସାମାଜିକ ବ୍ୟବହାରର ସ୍ତର ଆଉ ଅନ୍ୟଟି ଭାବନାକୁ ଅଧିକ ଶାଣିତ, ସଫଳ ଏବଂ ଉନ୍ନତ କରିବାର ବୌଦ୍ଧିକ ସ୍ତର। ଏ ପ୍ରକାର ସ୍ତରର ଭାଷା ପାଇଁ

ସାଧାରଣତଃ ଆମ ଦୈନନ୍ଦିନ ଜୀବନର ମୌଳିକ ସାମାଜିକ ବ୍ୟବହାରର ଭାଷା ପ୍ରଥମେ ଜାଣିବା ଦରକାର। ତାହା ଜାଣିଲେ ହିଁ ବୌଦ୍ଧିକ ପ୍ରୟୋଗ ଓ ଚିନ୍ତନର ଉନ୍ନତସ୍ତରର ଭାଷା ଶିଖିବା ସହଜ ହୋଇପାରିବ। ମାତୃଭାଷା ବ୍ୟବହାରରେ ମନରେ ଯେଉଁ ଧାରଣା ସୃଷ୍ଟି ହୁଏ, ବିକଶିତ ହୁଏ ଏବଂ ବିଭିନ୍ନ ଧାରଣାମାନ ପରସ୍ପର ଛନ୍ଦାଛନ୍ଦି ହୋଇ ଯୋଡ଼ି ହୋଇ ଶିକ୍ଷାର୍ଥୀର ସମସ୍ୟା ସମାଧାନ ଓ ଚିନ୍ତନ ପ୍ରକ୍ରିୟାକୁ ଉନ୍ନତ କରେ, ତାହା କେବଳ ପାର୍ଶ୍ୱ ପରିବେଶରେ ଭାଷାର ବହୁଳ ବ୍ୟବହାରରୁ ହିଁ ଆସିଥାଏ। ଶିକ୍ଷା ଏକ ବିକାଶ ଧାରା, ଯାହା ବ୍ୟକ୍ତିର ଶାରୀରିକ, ମାନସିକ, ସାମାଜିକ, ବୌଦ୍ଧିକ ତଥା ଆଧାତ୍ମିକ ବିକାଶରେ ଯଥେଷ୍ଟ ସାହାଯ୍ୟ କରିଥାଏ। ଶିକ୍ଷା ପ୍ରତ୍ୟେକ ବ୍ୟକ୍ତିଙ୍କ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି, ତା'ର ପ୍ରଭାବରେ ସମସ୍ତଙ୍କୁ ପ୍ରଭାବିତ କରିଥାଏ। ଦାର୍ଶନିକ ଡାଇଓଜିନ୍ସ କହିଛନ୍ତି, 'ଶିକ୍ଷା ହେଉଛି ଯୁବକମାନଙ୍କ ପ୍ରତି ଏକ ନିୟନ୍ତ୍ରଣକାରୀ ଆଶୀର୍ବାଦ, ବୃଦ୍ଧମାନଙ୍କ ପ୍ରତି ସାନ୍ତ୍ୱନା, ଦରିଦ୍ରମାନଙ୍କ ପ୍ରତି ସମ୍ପତ୍ତି ଓ ଧନୀମାନଙ୍କ ପ୍ରତି ଅଳଙ୍କାର ସଦୃଶ'।

ଆଧୁନିକ ଶିକ୍ଷା ଆମକୁ ଭୋଗବାଦର ଗମ୍ଭୀରି ଭିତରକୁ ଠେଲିଦେଉଥିବା ବେଳେ, ପ୍ରାଚ୍ୟ ଶିକ୍ଷାର ମୌଳିକ ଦର୍ଶନ ଆତ୍ମସାକ୍ଷାତ୍କାର ଆଧାରିତ ଅଟେ। ପାଶ୍ଚାତ୍ୟ ଶିକ୍ଷା ଆମକୁ ଶିଳ୍ପ ଦେଉଛି ଆଉ ତା'ସହିତ ପ୍ରଦୂଷଣ ମଧ୍ୟ ଦେଉଛି। କର୍ମଦେଉଛି ତ କାମନା ଦେଉଛି ଆଉ ହତାଶା ମଧ୍ୟ ଦେଉଛି। ଏମିତି ଶିକ୍ଷାକୁ ଆଦରି ନିଶ୍ଚିତଭାବରେ ଆମ ପେଟପୂରୁଛି, ପିଠି ଘୋଡ଼ିହେଉଛି ହେଲେ ମନ ତ ପୂରୁନାହିଁ। ପାଟି ପଲଉ, ଡାଲି, ମହୁର, ବେସର ଖାଉଛି କିନ୍ତୁ ମନରେ ସରାଗ ନାହିଁ, ଦେହ ପାଟବସନ ପିନ୍ଧୁଛି ମାତ୍ର ମନରେ ସନ୍ତୋଷ ନାହିଁ। ଘର ବହୁତ ବଡ଼ ଆଉ ସୁନ୍ଦର ଗଢ଼ାହେଉଛି ହେଲେ ରହିବାକୁ ଭଲ ପରିବାର ନାହାନ୍ତି। ଏମିତି ବସ୍ତୁବାଦୀ ସୁଖରେ ଅଛି ଶରୀର କିନ୍ତୁ କଷ୍ଟରେ ବିତୁଛି ଜୀବନ! ତେଣୁ ଆଧୁନିକ ବସ୍ତୁବାଦୀ ଶିକ୍ଷା ସହିତ ପ୍ରାଚୀନ ସଂସ୍କାରିତ ଶିକ୍ଷାକୁ ମିଶାଇ ଗୋଟିଏ ଛାଞ୍ଚରେ ଢାଳିବାକୁ ହେବ ବୋଲି ମହାମନୀଷୀମାନେ ମତ ଦିଅନ୍ତି। ପ୍ରାଚ୍ୟ ଶିକ୍ଷାର ମୌଳିକ ଦର୍ଶନ ସମ୍ବନ୍ଧିତ କିଛି ମତାମତକୁ ଏଠାରେ ଉଦ୍ଧୃତ କରାଯାଇଅଛି। ଉପନିଷଦ କହିଲେ, 'ଆତ୍ମାର ମୁକ୍ତି ଶିକ୍ଷାର ଚରମ ଲକ୍ଷ୍ୟ'। ସ୍ୱାମୀ ବିବେକାନନ୍ଦଙ୍କ ମତରେ, 'ମନୁଷ୍ୟ ମଧ୍ୟରେ ଅନ୍ତର୍ନିହିତ ଦୈବୀଶକ୍ତିର ପରିପ୍ରକାଶ ହିଁ ଶିକ୍ଷା'। ମନ ମଧ୍ୟରେ ଏକ ଆଧାତ୍ମିକତାର ବୀଜ ବପନ କରି ମନୁଷ୍ୟକୁ ଏକ ମିଛମାୟା ଅଳିକ ବନ୍ଧନରୁ ମୁକ୍ତ କରାଇ ଈଶ୍ୱରଙ୍କ ସାନ୍ନିଧ ଲାଭ କରାଇଥାଏ। ଏହି ଶିକ୍ଷା ପ୍ରାପ୍ତି ହେବା ଦ୍ୱାରା ମନୁଷ୍ୟର ଆତ୍ମିକ ଓ ମାନସିକ ଗୁଣ ସମୂହର ବିକାଶ ସାଧିତ ହୋଇଥାଏ। ନିଃସ୍ୱାର୍ଥପରତା ଆଉ ଆତ୍ମତ୍ୟାଗ ଏହିପରି ଶିକ୍ଷାବ୍ୟବସ୍ଥାର ଅନ୍ୟତମ ଆକର୍ଷିତ ଅଧ୍ୟାୟ, ଯାହା ବେଦ ପୁରାଣ ଯୁଗରୁ ପ୍ରଚଳିତ ହୋଇ ଆସୁଅଛି। ବର୍ତ୍ତମାନର ସ୍ୱାର୍ଥପୂର୍ଣ୍ଣ ପରିବେଶକୁ ଏହିପରି ଶିକ୍ଷା ମହୋଷଧି ଭାବରେ କାର୍ଯ୍ୟ କରିବ ଏଥିରେ ସନ୍ଦେହ ନାହିଁ।

'ଜୀବନ ବିଦ୍ୟାଳୟ' ଗ୍ରନ୍ଥରେ ଚିତ୍ତରଞ୍ଜନ ଦାସ ଲେଖିଛନ୍ତି, 'ମୁଠାଏ ଚାଉଳ, ଖଣ୍ଡିଏ କନା ସଂଗ୍ରହ କରିବା ପାଇଁ ଏ ଦେଶର ଅଗଣିତ ପାଠୁଆ ଆପଣାର ପାଠକୁ ସମର୍ପି ଦେଉଛନ୍ତି। ଆଜି ଶରୀରକୁ ଭୋଗ ବୃତ୍ତି ଦ୍ୱାରା ବଞ୍ଚାଇ ରଖିବାର କୌଶଳକୁ ବିଦ୍ୟା କୁହାଯାଉଛି। ଯିଏ ଏହି କୌଶଳଟା ଆୟତ୍ତ କରିନେଇଛି, ସେ ଏହି ସଂସାରରେ ସବୁରି ସ୍ୱୀକାର ପାଉଛି। ମାତ୍ର ଆମର ବିଦ୍ୟା ଲାଭଦ୍ୱାରା ଯଦି ଜଗତର କଲ୍ୟାଣ ନହେଲା, ତେବେ ସେ ବିଦ୍ୟାକୁ ବିଦ୍ୟା ବୋଲି କୁହାଯାଇପାରିବ ନାହିଁ। ଏ ଦୁଃଖୀ ସଂସାରରେ ବିଦ୍ୟାର୍ଥୀର ଦାୟିତ୍ୱ ବେଶୀ। ତାହାରି ହାତରେ ଆରୋଗ୍ୟର ଚାବିକାଠି ରହିଛି। ତାହାରି ମନକୁ ସେ ତାହାରି ବିଦ୍ୟାପରି ବଡ଼ କରିପାରିଲେ ଜଗତକୁ ଅନେକ ପରିମାଣରେ ରୋଗମୁକ୍ତ କରିପାରିବ। କିନ୍ତୁ ତରତର ହୋଇ ଆପଣାକୁ ହାଟ ଭିତରେ ବିକି ବାହାରିଲେ, ଆମେ ନିଜର ସାମାଜିକ ଦାୟିତ୍ୱକୁ ତୁଲାଇ ପାରିବା ନାହିଁ। କାରଣ ଆମର ଜୀବନ-ସାଧନା ଆମର କିନ୍ତୁ ଅର୍ଜିତ ବିଦ୍ୟା ଆମର ନୁହେଁ। ତାହା ସବୁ ମଣିଷର ମଙ୍ଗଳ ଲାଗି ଉଦ୍ଦିଷ୍ଟ ହୋଇପାରିଲେ ହିଁ ଆମ ବିଦ୍ୟା ସାର୍ଥକ ହୋଇପାରିବ।'

ମୁଖ୍ୟ ଗ୍ରନ୍ଥାଗାରିକ
କିସ୍ ମାନିତ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଉତ୍କଳଗୌରବ ମଧୁସୂଦନ

ଡକ୍ଟର ସର୍ବେଶ୍ୱର ସେଣ

ଉତ୍କଳଗୌରବ ମଧୁସୂଦନ ଦାସ, ତାଙ୍କ ମହାପ୍ରୟାଣର ପୂର୍ବରୁ, ଡାକିଲେ ନୀଳକଣ୍ଠ ଦାସଙ୍କୁ, ଉତ୍କଳ ସମ୍ମିଳନୀର ଦାୟିତ୍ୱ ସଅଁପି ଦେଲେ ତାଙ୍କ ହାତରେ। ଦରଦଭରା କଥା ପଦୁଟିଏ କହିଲେ, କଣ୍ଠ ବାଷ୍ପାକୁଳ – ମୁଁ ତ ଯାଉଛି ମନେ ରଖିଥିବ ଜଣେ ଓଡ଼ିଆ ଥିଲା। କୁଳବୃଦ୍ଧଙ୍କ ଏହା ଆତ୍ମାର ବାଣୀ ବାଣୀ ନୁହେଁ ଓଡ଼ିଆଙ୍କ ପାଇଁ ସାକ୍ଷାତ ମୃତ୍ୟୁ ସଞ୍ଜୀବନୀ। ଖାଲି କଥାରେ ନୁହେଁ, ମଧୁବାବୁ ଥିଲେ କାୟ-ମନୋ-ବାକ୍ୟରେ ଓଡ଼ିଆ। ଓଡ଼ିଆ-ଭାଷା-ଜାତିର ଉନ୍ନତି, ଏଥିପାଇଁ ଉତ୍ସର୍ଗ କରିଯାଇଛନ୍ତି ଆପଣାର ସର୍ବସ୍ୱ। ତାଙ୍କରି ଅକୁଣ୍ଠ ତ୍ୟାଗ, ସଂଗ୍ରାମ, ଆପ୍ରାଣ ପ୍ରଚେଷ୍ଟା, ଓଡ଼ିଶା ପାଇଲା ତା'ର ସ୍ୱତନ୍ତ୍ର ପରିଚୟ। ୧୯୩୬ ମସିହା, ଏପ୍ରିଲ ୧ ତାରିଖ ସାରା ଓଡ଼ିଶା ଉତ୍ସବମୁଖର ମାତ୍ର ନ ଥିଲେ ମଧୁସୂଦନ ଦାସ। ତଥାପି ଯେତେଦିନ ପର୍ଯ୍ୟନ୍ତ ସୂର୍ଯ୍ୟ, ଚନ୍ଦ୍ର ଥିବେ, ଓଡ଼ିଆ ଜାତି ଥିବ ଓଡ଼ିଶାର ଗର୍ବ ଗୌରବ ମଧୁସୂଦନ ଚିର ଭାସ୍ୱର ରହିବେ – ଏହା ଅନସ୍ୱୀକାର୍ଯ୍ୟ।

ସେଦିନ ଆସିଲା ଓଡ଼ିଶାର ଦୁର୍ଭାଗ୍ୟ। ୧୫୬୮ରୁ ୧୮୦୩, ଦୀର୍ଘ ୨୩୫ ବର୍ଷ। ଲହୁ ଲୁହର କରୁଣ କାହାଣୀ, ଲେଖାହେଲା ଓଡ଼ିଶା ଇତିହାସ। ଆଫଗାନ, ମୋଗଲ, ମରାଠା, ଅତ୍ୟାଚାରୀ ବର୍ଗୀ – ସଭିଏଁ ଓଡ଼ିଶା ଜନ-ଜୀବନର ଗଳଗ୍ରହ। ଆସିଲେ ଫିରିଙ୍ଗି, ସେମାନେ ବି ଓଡ଼ିଶା ଖଜଣାଖାନା ଲୁଟିଲେ। ପ୍ରଦେଶକୁ ତିନି ଖଣ୍ଡ କରିଦେଲେ। ଦକ୍ଷିଣ ଓଡ଼ିଶା ଅଧିକାର କଲେ। ଏହାକୁ ମିଶାଇ ଦେଲେ ମାଡ୍ରାସ ପ୍ରେସିଡ଼େନ୍ସିରେ। ଉପକୂଳ ପ୍ରଦେଶ, ଗଡ଼ଜାତ ଅଞ୍ଚଳ- ଏସବୁ ମିଶିଗଲା ବଂଗଳା ସହିତ। ସମଦଶା ହେଲା ସମ୍ବଲପୁରର। ଉଭୟ ସମ୍ବଲପୁର, ଏହାର ସଂଲଗ୍ନ ଅଞ୍ଚଳ ରହିଲା, କେନ୍ଦ୍ର ପ୍ରଦେଶରେ। ଫିରିଙ୍ଗିଏ ବଡ଼ ଚତୁର। ଓଡ଼ିଶାର ରାଜନୀତିକ ଦୁର୍ଭାଗ୍ୟର ରାସ୍ତା ଖୋଲିଦେଲେ। ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ହେଲା ଅନ୍ଧକାରାଚ୍ଛନ୍ନ। ଓଡ଼ିଆଏ ଆପଣାର ଅସ୍ମିତାକୁ ଭୁଲିବାକୁ ଲାଗିଲେ। ପୁନଶ୍ଚ ବେଢ଼ି ଉପରେ କୋରଡ଼ା। ୧୮୬୬ ମସିହା, ରାଜା ଦିବ୍ୟସିଂହ ଦେବଙ୍କ ନ' ଅଙ୍କ, ପଡ଼ିଲା ଭୟାବହ ଦୁର୍ଭିକ୍ଷ (ନ' ଅଙ୍କ ଦୁର୍ଭିକ୍ଷ)। ଓଡ଼ିଶାର ଅର୍ଥନୀତିକ ମେରୁଦଣ୍ଡ କ୍ରମେ ନଇଁ ପଡ଼ିଲା। ତା' ସହିତ ପ୍ରଶାସନିକ ଅବହେଳା ସୀମା ଟପିଲା। ଫେମିନ୍ କୋଡ଼୍‌ରୁ ଓଡ଼ିଶା କାଣୀ କଉଡ଼ିଟିଏ ପାଇଲାନି। ଗୋଟେ ଐତିହ୍ୟସମ୍ପନ୍ନ ଜାତି ସର୍ବହରା ପାଲଟିଗଲା। ପୁନଶ୍ଚ ଆଉ ଏକ ବିପଦ। ଚାଲିଲା ଓଡ଼ିଆ ଭାଷା ବିଲୋପ ଚକ୍ରାନ୍ତ। ଜାତିପ୍ରେମୀଏ ଅଂଟା ଭିଡ଼ିଲେ। ଓଡ଼ିଆ ଭାଷାର ସ୍ୱାଭିମାନ ରଖିଲେ। ମୁଖ୍ୟ ଭୂମିକାରେ ପ୍ୟାରୀମୋହନ ଆଚାର୍ଯ୍ୟ, କର୍ମବୀର ଗୌରୀଶଙ୍କର ରାୟ, ବ୍ୟାସକବି ଫକୀର ମୋହନ ସେନାପତି, ନୀଳମଣି ବିଦ୍ୟାରତ୍ନ, ବାମଣ୍ଡା ରାଜା ବାସୁଦେବ ସୁଢ଼ଳଦେବ। ଏମାନଙ୍କ ନାମ ସ୍ମରଣୀୟ। ସମସ୍ତେ ନବସମ୍ଭୂତ ଶିକ୍ଷିତ ସମ୍ପ୍ରଦାୟ। ନିଜକୁ ବହୁ ଭାବରେ ସଂଗଠିତ କଲେ। ଜନ୍ମନେଲା 'ଓଡ଼ିଆ ଜାତୀୟତାବାଦ'। ବିଭିନ୍ନ ପ୍ରକାର ସମ୍ବାଦପତ୍ର ନବଜାଗରଣର ବାର୍ତ୍ତା ବାଣ୍ଟିଲେ। କ୍ରମେ ଓଡ଼ିଆଏ ସଚେତନ ହେଲେ। ଆପଣାର ସ୍ୱାଭିମାନ ରକ୍ଷା ପାଇଁ ଦୃଢ଼ପ୍ରତିଜ୍ଞ ହେଲେ। ଆପାତତଃ ୧୮୭୦ ବେଳକୁ ଓଡ଼ିଆ ଭାଷା ସଂକଟରୁ ମୁକୁଳିଲା। ଓଡ଼ିଆ ସ୍ୱତନ୍ତ୍ର ଭାଷାର ମାନ୍ୟତା ପାଇଲା। ସଚେତନ ଯୁବଗୋଷ୍ଠୀ, ଲାଗିପଡ଼ିଲେ ବିଛିନ୍ନାଞ୍ଚଳ ଏକତ୍ରୀକରଣ ପାଇଁ। ସର୍ବାଗ୍ରେ ମଧୁସୂଦନ ଦାସ। ଉତ୍କଳ ଭାଷା ଉନ୍ନତି ସଭା, ଉତ୍କଳ ଭାଷୋଦ୍ଦୀପନା ସଭା, ଉତ୍କଳୋଲ୍ଲାସିନୀ, ଗଞ୍ଜାମ ଉତ୍କଳ

ହିତବାଦିନୀ ସଭା, ବାଲେଶ୍ୱର ନେସନାଲ ସୋସାଇଟି, ଉତ୍କଳ ସାହିତ୍ୟ ସମ୍ମିଳନୀ, ଉତ୍କଳ ସମ୍ମିଳନୀ ସଭା, ଓଡ଼ିଶା ଆଦି ପ୍ରାୟ ୫୪ଟି ଅନୁଷ୍ଠାନ ଗଠିତ ହେଲା । ତତ୍କାଳୀନ ସାମାଜିକ ସମସ୍ୟା ସମାଧାନ ଥିଲା ଏଗୁଡ଼ିକର ଲକ୍ଷ୍ୟ । ଅନୁଷ୍ଠାନଗୁଡ଼ିକ ମଧ୍ୟରୁ ଅଧିକାଂଶ ଥିଲେ ଅଳ୍ପାୟୁ । ଶେଷରେ ଉତ୍କଳ ସମ୍ମିଳନୀ (୧୯୦୩) ଓଡ଼ିଶାର ଭାଗ୍ୟରବି ଉଦୟରେ ସହାୟକ ହେଲା । ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣରେ ଉତ୍କଳ ସମ୍ମିଳନୀର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହାର କର୍ଣ୍ଣଧାର ମଧୁସୂଦନ ଦାସ ।

ସେଦିନ ନଥିଲା ଓଡ଼ିଶା, ଥିଲେ ଖାଣ୍ଟି ଓଡ଼ିଆ । ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ମଧୁବାବୁ । ଉତ୍କଳମଣି ଗୋପବନ୍ଧୁ ଦାସ, ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ - ଏମାନଙ୍କ ସହ ଆହୁରି ଅନେକ । ସମସ୍ତେ ଭଲ ପାଉଥିଲେ ଆପଣାର ଭିଟାମାଟିକୁ, ଭାଷା ପ୍ରୀତି ସେମାନଙ୍କର ଥିଲା ଶୀର୍ଷରେ, ଜାତୀୟତାବାଦ ସେମାନଙ୍କ ଅସ୍ଥିମଜ୍ଜାଗତ । ଗୋଟେ ପଟେ ସ୍ୱାଧୀନତାର ମହାସଂଗ୍ରାମ ଏ ପଟେ ଖଣ୍ଡବିଖଣ୍ଡିତ ଓଡ଼ିଶାର ଏକତ୍ରୀକରଣ ପାଇଁ ପ୍ରଚେଷ୍ଟା । ଏହାର ସୂତ୍ରଧର ଥିଲେ ମଧୁସୂଦନ । ପ୍ରଥମେ ଉତ୍କଳ ସଭା, ପରେ ଉତ୍କଳ ସମ୍ମିଳନୀ (୧୯୦୩) । ସେ ଏହାକୁ ମାଧ୍ୟମ କଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଉଦ୍ୟମ ଜାରି ରଖିଥିଲେ । ଇଂରେଜମାନଙ୍କ ସହାୟତାରେ ଆଞ୍ଚଳିକ ସ୍ୱାର୍ଥ ହାସଲ, ଏଇଟି ଥିଲା ତାଙ୍କର ମୂଳ ଉଦ୍ଦେଶ୍ୟ ମାତ୍ର ମହାଭାରତୀୟ ଚେତନାବୋଧରୁ ସେ ଅଲଗା ନଥିଲେ । ଭାରତୀୟ ଜାତୀୟ କଂଗ୍ରେସରେ ସେ ଥିଲେ ସକ୍ରିୟ ସଦସ୍ୟ (୧୮୮୫ରୁ ୧୯୧୦) । ଭାରତ ଏକ ଉପମହାଦେଶ, ଏଥିରେ ଓଡ଼ିଶାର ଚିହ୍ନ ବର୍ଣ୍ଣ ଥିଲା ଅତ୍ୟନ୍ତ ରୁଗ୍ଣ, ବିକଳାଙ୍ଗ । ଗଭୀର ଭାବେ ବ୍ୟଥିତ ହେଲେ ମଧୁବାବୁ । ଓଡ଼ିଶାର ଭୌଗୋଳିକ ସୀମା ନିର୍ଦ୍ଧାରଣ, ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶା ସହ ମିଶ୍ରଣ, ସେ ନେଲେ ବଜ୍ର ଶପଥ । ବୀର କେବେ ପଳାୟନପନ୍ଥୀ ହୋଇ ନପାରେ, ଠିକ୍ ସେମିତି ଓଡ଼ିଆ ଜାତିର ମହାନାୟକ ମଧୁବାବୁ । ତାଙ୍କ ଅଭିଧାନରେ ହାର୍ ନଥିଲା ! ସେ ଜଣେ ପ୍ରାଜ୍ଞ, ବିଜ୍ଞ, ବିଚକ୍ଷଣ, ଧୀ ସମ୍ପନ୍ନ ବ୍ୟକ୍ତି । ଦକ୍ଷ ଆଇନଜୀବୀ, ପୋଖତ ରାଜନୀତିଜ୍ଞ ଭାବେ ତାଙ୍କର ଅମାପ ଖ୍ୟାତି । ସେ ଦେଖିଲେ ପୂର୍ଣ୍ଣାଙ୍ଗ ଓଡ଼ିଶା ସ୍ୱପ୍ନ, ତାହା ସାକାର ହେଲା ।

୧୮୮୨ ମସିହା, ଗଠିତ ହୋଇଥିଲା 'ଉତ୍କଳସଭା' । ଏହି ସଭାର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଗଲା । ପ୍ରମୁଖ ଭୂମିକାରେ କର୍ମବୀର ଗୌରୀଶଙ୍କର ରାୟ, ମଧୁସୂଦନ ଦାସ । ଓଡ଼ିଆମାନଙ୍କୁ ଏକତ୍ରିତ କରିବା ଥିଲା ଏହାର ଅସଲ ଲକ୍ଷ୍ୟ । ଉତ୍କଳ ସଭା, ଉତ୍କଳ ସମ୍ମିଳନୀ - ଏ ଦୁଇଟି ପ୍ରମୁଖ ଅନୁଷ୍ଠାନ । ଦୀର୍ଘ ଦୁଇ ଦଶନ୍ଧି ଧରି ସଂଗ୍ରାମ ଜାରି ରହିଲା । ଓଡ଼ିଆ ଭାଷାଭାଷୀଙ୍କ ସାମାଜିକ ସ୍ୱାର୍ଥ, ରାଜନୀତିକ ଉଦ୍ଦେଶ୍ୟ ସମାଧାନ - ଏଥିରେ ସମ୍ମିଳନୀ ମନୋନିବେଶ କଲା । ଉତ୍କଳ ସମ୍ମିଳନୀ ଥିଲା ମଧୁସୂଦନଙ୍କ ମାନସପୁତ୍ର । ଏହି ଅନୁଷ୍ଠାନରେ ସାମିଲ ହେଲେ ଗୋପବନ୍ଧୁ ଦାସ, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ, ପାରଳା ରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ । କନିକା ରାଜବାଟୀ ଉତ୍କଳ ସମ୍ମିଳନୀର ଏନ୍ତୁଡ଼ିଶାଳ । ସମ୍ମିଳନୀର ଜନ୍ମ ଜାତକ କଥା ଲେଖିଲା ନାଁ ଡାକ ପତ୍ରିକା 'ଉତ୍କଳ ଦୀପିକା' - ନଗରର ବିଖ୍ୟାତ ଓକିଲ ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କର ଆହ୍ୱାନ ମତେ ଏ ନଗରର କନିକା ରାଜବାଟୀରେ ଗୋଟିଏ ସଭା ଆହୂତ ହୋଇଥିଲା । ନଗରବାସୀ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଭଦ୍ରଲୋକ ପ୍ରାୟ ୨୫/୩୦ ଜଣ ଉପସ୍ଥିତ ଥିଲେ । କନିକା ରାଜାଙ୍କର ପ୍ରସ୍ତାବ ମତେ କେନ୍ଦୁଝରର ମହାରାଜ ସଭାପତି ହୋଇ ସଭା ପରିଚାଳନା କଲେ । ଏଇ ଦିନଟି ଉତ୍କଳ ସମ୍ମିଳନୀର ସ୍ୱର୍ଣ୍ଣନକ୍ଷତ୍ର ଦିବସ । ମଧୁବାବୁଙ୍କ ମାନସ ସନ୍ତାନ ଉତ୍କଳ ସମ୍ମିଳନୀ । ଲାଳିତ ପାଳିତ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ କୋଳରେ । କ୍ରମେ ତାହା ବୟଃପ୍ରାପ୍ତ ହେଲା ।

ବିଚ୍ଛିନ୍ନାଞ୍ଚଳରେ ସଂଖ୍ୟାଲଘୁ ଓଡ଼ିଆ ଭାଷାଭାଷୀ, ସେମାନେ ଏକପ୍ରକାର ଅଣନିଃଶ୍ୱାସ, ଭୋଗୁଥିଲେ ଅକଥନୀୟ ମାନସିକ ଯନ୍ତ୍ରଣା । ଜାତୀୟତାବାଦୀ ମଧୁସୂଦନ ହେଲେ ମ୍ରିୟମାଣ । ଓଡ଼ିଶାଠାରୁ ଅଲଗା ରହିଥିବା ବିଭିନ୍ନ ଅଞ୍ଚଳକୁ ଏକାଠି କରିବାକୁ ହେବ । ଏଥିପାଇଁ ସେ ବିଭିନ୍ନ ପଦକ୍ଷେପ ନେଲେ । ସେ ଉତ୍କଳ ସମ୍ମିଳନୀର ଜନ୍ମଦାତା, ପ୍ରଥମ ସମ୍ପାଦକ, ପରବର୍ତ୍ତୀ ସମୟରେ ଦୁଇଟି ଅଧିବେଶନର ସଭାପତି ।

ମଧୁବାବୁ ବିହାର ଓଡ଼ିଶା କାଉନ୍‌ସିଲ ସଭ୍ୟ। ବଙ୍ଗଳା, ମଧ୍ୟପ୍ରଦେଶ, ମାନ୍ଦ୍ରାଜ – ଏ ପ୍ରଦେଶରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ, ବିହାର ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନ ସହ ମିଶିବା ଉଚିତ୍। ଏକଥା ମଧୁବାବୁ ଅନୁଭବ କଲେ। ଏଥିପାଇଁ ଗୋଟେ ପ୍ରସ୍ତାବ ଆଣିଲେ। ସେ ଓଡ଼ିଶାର ମନ୍ତ୍ରୀ ଥାଆନ୍ତି। ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ପ୍ରସ୍ତାବଟି ଗୃହୀତ ହେଲା। ତତ୍‌କାଳୀନ ଭାରତ ସରକାର ପ୍ରସ୍ତାବଟିକୁ ଭିତ୍ତି କଲେ, ବିଭିନ୍ନ କମିଟିମାନ ଗଠିତ ହେଲା। ବସ୍ତୁତଃ ଓଡ଼ିଶାର ସମସ୍ୟାମାନ ଚର୍ଚ୍ଚାର ବଳୟକୁ ଆସିଲା।

୧୯୨୪ ମସିହା, ଗଠିତ ହେଲା ସି. ଏଲ୍. ଫିଲିପ – ଡଫ୍ କମିଟି। କରଦ ରାଜ୍ୟର ପଲିଟିକାଲ ଏଜେଣ୍ଟ ସି.ଏଲ୍. ଫିଲିପ। ବିଶାଖାପାଟଣାର ଜିଲ୍ଲାପାଳ ଏ.ସି. ଡଫ୍ କମିଟିରେ, ଏହା ସମ୍ମୁଖରେ ପାରଳା ରାଜା କୃଷ୍ଣଚନ୍ଦ୍ର ଓଡ଼ିଶାର ବହୁ ଐତିହାସିକ ତଥ୍ୟ ଉପସ୍ଥାପନ କଲେ। ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସୁଚିନ୍ତିତ ମତାମତ ରଖିଲେ। ମାନ୍ଦ୍ରାଜ ସରକାରଙ୍କ ଘୋର ବିରୋଧ, ଫଳରେ କମିଟିଟି କାର୍ଯ୍ୟକାରୀ ହୋଇ ପାରିଲାନି। କିନ୍ତୁ ଫିଲିପ୍ ଉଚ୍ଚ ପ୍ରଶଂସା କଲେ ରାଜାଙ୍କୁ। ଲେଖିଲେ – ଗଞ୍ଜାମର ସିନିଅର ଜମିଦାର ପାରଳାଖେମୁଣ୍ଡି ରାଜା ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଆବଶ୍ୟକ ଦୃଢ଼ ମତ ପୋଷଣ କରିଛନ୍ତି। ଏଥିରେ ପାରଳା ରାଜାଙ୍କ ସ୍ୱଚ୍ଛତା ତଥା ନିଜସ୍ୱ ଇଚ୍ଛା ପରିସ୍ଫୁଟ। ଏକଥା ବି କମିଟି ଉଲ୍ଲେଖ କଲେ। ଏ ସମସ୍ତ ମୂଳରେ ଥିଲା ମଧୁବାବୁଙ୍କ ପ୍ରେରଣା।

୧୯୨୭ ମସିହା, ସର୍ବଭାରତୀୟ ସ୍ତରରେ ଶାସନ ସଂସ୍କାର ପାଇଁ କମିଟିଟିଏ ଗଠିତ ହେଲା। ଏହା 'ସାଇମନ କମିଶନ'। ଏଥିରେ ଜଣେ ହେଲେ ଭାରତୀୟ ସଦସ୍ୟ ଉପସ୍ଥିତ ନଥିଲେ। କଂଗ୍ରେସ କମିଶନଙ୍କୁ ବିରୋଧ କଲା। କିନ୍ତୁ ଉତ୍କଳ ସମ୍ମିଳନୀ ଏହା ସପକ୍ଷରେ। ମଧୁସୂଦନ ଦାସ, ରାଜା କୃଷ୍ଣଚନ୍ଦ୍ର, କନିକା ରାଜା ନାରାୟଣ ଭଞ୍ଜଦେବ– ଏମାନେ କମିଟିକୁ ସ୍ୱାଗତ କଲେ। ମାନ୍ଦ୍ରାଜରେ ସ୍ୱୟଂ ଗଜପତି କୃଷ୍ଣଚନ୍ଦ୍ର କମିଟି ଆଗରେ ସାକ୍ଷ୍ୟ ଦେଲେ। ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଏକ ଯୁକ୍ତିଯୁକ୍ତ ପ୍ରସଙ୍ଗ – ଏକଥା କମିଶନ ସ୍ୱୀକାର କଲେ। ଲଣ୍ଡନରେ ଚାଲିଲା ଗୋଲଟେବୁଲ ବୈଠକ । ବୈଠକରେ ଯୋଗଦେବା ପାଇଁ ପାରଳା ରାଜାଙ୍କୁ ସମ୍ମିଳନୀ ମନୋନୀତ କଲେ। ଲଣ୍ଡନ ଯିବା ପୂର୍ବରୁ ତାଙ୍କୁ ସମ୍ବର୍ଦ୍ଧିତ କରିବାକୁ ସିଦ୍ଧାନ୍ତ ହେଲା। କଟକ ସହରରେ ସଭାଟିଏ ବସିଲା। ଆୟୋଜକ ବ୍ରଜସୁନ୍ଦର ଦାସ। ମଧୁସୂଦନ ଦାସ, ଭୁବନାନନ୍ଦ ଦାସ, ବିଶ୍ୱନାଥ କର, ଏମାନଙ୍କ ସହ ଅନ୍ୟାନ୍ୟ ନେତୃବୃନ୍ଦ ଯୋଗଦେଲେ। ମଧୁବାବୁ ରାଜାଙ୍କର ଉଚ୍ଚ ପ୍ରଶଂସା କରିଥିଲେ।

୧୯୩୩ ମସିହା, ମାର୍ଚ୍ଚ ୨୭ ତାରିଖ, ପ୍ରକାଶ ପାଇଲା ଓଡ଼ିଶା ପ୍ରଦେଶ ଗଠନ ସମ୍ବନ୍ଧୀୟ ଶ୍ୱେତପତ୍ର। ଏଥିରେ ଉତ୍କଳ ସମ୍ମିଳନୀ ସନ୍ତୁଷ୍ଟ ହେଲାନି। ମଧୁସୂଦନଙ୍କଠାରୁ ଉତ୍ସାହ ପାଇଲେ କୃଷ୍ଣଚନ୍ଦ୍ର। ଦ୍ୱିତୀୟବାର ବିଲାତ ଗଲେ, ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସଙ୍କୁ ସାକ୍ଷାତ କଲେ। ସେ ରାଜାଙ୍କୁ ସହାନୁଭୂତି ସହ ଶୁଣିଲେ। ସୁପାରିସ କଲେ ଜଏଣ୍ଟ ପାର୍ଲିଆମେଣ୍ଟାରି କମିଟି ଗଠନ ପାଇଁ। ଏହାର ଅଧ୍ୟକ୍ଷ ଲିନ୍ ଲିଥଗୋ। ଏହି କମିଟିକୁ ତଥ୍ୟ ଯୋଗାଇବା ପାଇଁ ସବ୍ କମିଟିଟିଏ ହେଲା। କମିଟିରେ ରହିଲେ ଗଜପତି କୃଷ୍ଣଦେବ, ଖଲିକୋଟର ରାଜା, ବିଶିଷ୍ଟ ଆଇନଜ୍ଞ ଲିଙ୍ଗରାଜ ପାଣିଗ୍ରାହୀ, ତୁଙ୍ଗନେତା ଭୁବନାନନ୍ଦ ଦାସ, ଶ୍ୟାମସୁନ୍ଦର ଗନ୍ତାଏତ। ସବ୍ କମିଟିର ନେତୃତ୍ୱ ନେଇଥିଲେ ପାରଳାରାଜା। ସମସ୍ତଙ୍କର ଆଦର୍ଶ ମଧୁବାବୁ। ତାଙ୍କରି ପରାମର୍ଶ ଆଗକୁ ରାସ୍ତା ଦେଖାଇଲା।

୧୯୩୪ ମସିହା, କୃଷ୍ଣଚନ୍ଦ୍ର ଦିଲ୍ଲୀ ଗଲେ। ଅନ୍ୟମାନଙ୍କ ସହ ସାକ୍ଷାତ କଲେ ଲର୍ଡ଼ ୱେଲିଙ୍ଗଡ଼ନଙ୍କୁ। ବହୁତ ସମୟ ଚର୍ଚ୍ଚା ଚାଲିଲା। ପାରଳା ମହାରାଜାଙ୍କ ଜମିଦାରୀର କ୍ଷେତ୍ରଫଳ ୬୧୮ ବର୍ଗ ମାଇଲ, ଏଥିରୁ ୨୦୬ ବର୍ଗ ମାଇଲ ଓଡ଼ିଶାରେ ଅନ୍ତର୍ଭୁକ୍ତ ହେବା ସିଦ୍ଧାନ୍ତ ହେଲା। ଜଏଣ୍ଟ କମିଟି ଏ ନିଷ୍ପତ୍ତିକୁ ଗ୍ରହଣ କରିନେଲା। ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସୀମା ଚୂଡ଼ାନ୍ତ ହେଲା। ଗଠିତ ହେଲା ନବ ଉତ୍କଳ (୧ ଏପ୍ରିଲ, ୧୯୩୬)। ମୁଖ୍ୟତଃ ଛଅଗୋଟି ଜିଲ୍ଲା – କୋରାପୁଟ, ଗଞ୍ଜାମ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର – ଏହାକୁ ନେଇ ଓଡ଼ିଶା ପାଇଲା ନୂଆ ପରିଚୟ। ସେତେବେଳକୁ ଆରପାରିରେ ଗୋପବନ୍ଧୁ ।

ମଧୁବାବୁ ଥିଲେ ଏକାନ୍ତ ଜାତି ପ୍ରାଣ। ତାଙ୍କର କଥା, କାର୍ଯ୍ୟ, ବକ୍ତବ୍ୟ, କବିତା ପ୍ରତିଟିରେ ଭରପୂର ଥିଲା

ଦେଶପ୍ରେମର କଥା, କାହାଣୀ । ସୁପ୍ତ ଓଡ଼ିଆକୁ ଜାଗ୍ରତ କରିବା ପାଇଁ ଥିଲା ଅଭୂତପୂର୍ବ ପ୍ରେରଣା । ଜାତି ପ୍ରେମ ବହ୍ନି ପ୍ରଜ୍ୱଳନ ଏହାର ଥିଲା ଅସଲ ଲକ୍ଷ୍ୟ । ଓଡ଼ିଶା ମାଟିରେ ଜନ୍ମ ମଧୁବାବୁ, ଏଥିପାଇଁ ତାଙ୍କ ଗର୍ବର ପଟ୍ଟାନ୍ତର ନଥିଲା । ଏହି କଥାକୁ ବ୍ୟକ୍ତ କଲାବେଳେ ସେ ହୋଇ ପଡୁଥିଲେ ଭାବ ବିହ୍ୱଳ । ଏମିତି ଘଟଣାଟିଏ, ଉତ୍କଳ ସମ୍ମିଳନୀର ବ୍ରହ୍ମପୁର ଅଧିବେଶନରେ । ସମବେତ ଓଡ଼ିଆମାନଙ୍କୁ ସେ କହିଲେ, ମୁଁ ଓଡ଼ିଆ, ଓଡ଼ିଶାରେ ଜନ୍ମ ଗ୍ରହଣ କରିଅଛି ଏବଂ ବାସ କରୁଅଛି । ଉତ୍କଳମାତା କୋଳରେ ମୋର ଅସ୍ଥି, ମାଂସ ରହିବ । ଯେଉଁମାନେ କୀର୍ତ୍ତିରଖି ଯାଇଛନ୍ତି ସେମାନେ ମୋ ପୂର୍ବ ପୁରୁଷ । ତାଙ୍କ କୀର୍ତ୍ତି ରକ୍ଷାର ଭାର ମୋ ଉପରେ ନ୍ୟସ୍ତ । ପ୍ରତ୍ୟେକ ଲୋକ ମନରେ ଏହି ଭାବ ସଂଚାର କରିବା ସମ୍ମିଳନୀର ଉଦ୍ଦେଶ୍ୟ । ଓଡ଼ିଆ ଜାତିର ଗତ ଗୌରବ, ହୃତ ଗୌରବ - ସବୁ ଫେରାଇ ଆଣିବା ପାଇଁ ମଧୁବାବୁ ଆପ୍ରାଣ ଉଦ୍ୟମ କରିଥିଲେ ।

ମଧୁସୂଦନଙ୍କ ଉଦ୍‌ବୋଧନ ଗୀତିକା ଥିଲା ପ୍ରାଣସ୍ପର୍ଶୀ । ସହଜ, ସରଳ, ସାବଲୀଳ ଭାଷା । ଏଗୁଡ଼ିକୁ ଗାଇଲା ବେଳେ ଶ୍ରୋତାଙ୍କ ପ୍ରାଣରେ ସଞ୍ଚରି ଯାଉଥିଲା ଅଭିନବ ପୁଲକ । ସବୁ ଥିଲା ଦେଶ-ପ୍ରେମ ମନ୍ଦାକିନୀ ଧାରା ସତେ ଯେମିତି ଏ ମାଟି ଆର୍ଦ୍ର ପାଲଟିଥିଲା । ବହି ଯାଉଥିଲା ଓଡ଼ିଆ ଜାତୀୟତାବାଦୀ ପୂତ-ପୟୋଧି ବାରି ! ଚହଲି ଯାଇଥିଲା ସମ୍ମିଳନୀର ପରିବେଶ । ସମବେତ ଓଡ଼ିଆ, ଖୋଜୁଥିଲେ ସାଶ୍ରୁବଦନା, ଆଲୁଳାୟିତ କେଶା ଉତ୍କଳ ମା'କୁ !

ଓଡ଼ିଆ ଜାତି, ଓଡ଼ିଆ ଭାଷା ପାଇଁ କୁଳବୃଦ୍ଧଙ୍କ ପ୍ରାଣ କାନ୍ଦୁଥିଲା । ଜଣେ ଖ୍ରୀଷ୍ଟିୟାନ ହୋଇ ମଧ୍ୟ ନୀଳାଚଳ ନିବାସୀ ଶ୍ରୀଜଗନ୍ନାଥ, ଜଗନ୍ନାଥ ସଂସ୍କୃତିକୁ ସେ ଉଚ୍ଚାସନ ଦେଇଛନ୍ତି । ଏହା ବେଶ୍ ମହାନୁଭବତାର ନିଦର୍ଶନ । ଏ ସମସ୍ତ ଗୁଣାବଳୀ ସହିତ ମଧୁବାବୁଙ୍କ ତ୍ୟାଗର ପଟ୍ଟାନ୍ତର ନାହିଁ । ଜାତିର ଗାଥା ଗୌରବକୁ ମଧ୍ୟ ସେ ଉଦ୍‌ଘୋଷଣା କରିଛନ୍ତି କବିତା ଛଳରେ, ତୋ ପୂର୍ବ ପୁରୁଷ ଜୟ କରିଥିଲେ / ଗଙ୍ଗାଠାରୁ ଗୋଦାବରୀ / ତାଙ୍କରି ଔରସେ ଜନ୍ମ ହୋଇ ତୁହି କେଉଁ ଗୁଣେ ତାଙ୍କ ସରି । କେବଳ ସେତିକି ନୁହେଁ, ସ୍ୱାର୍ଥ ହିଁ ଜାତି ପ୍ରେମର ବାଧକ, ଏଣୁ ସ୍ୱାର୍ଥମେଧ ଯଜ୍ଞର ସେ ପରିକଳ୍ପନା କରିଛନ୍ତି, ଜାତିର ଉନ୍ନତି ହେବ କିରେ ଭାଇ / ସ୍ୱାର୍ଥକୁ ଜଗତେ ମଣି / ଗୋଦର ଗୋଡ଼ରେ ମାଉଁସ ଲାଗିଲେ / ଦେହର କି ଶୁଭ ଗଣି ? ଏହି ପ୍ରସଙ୍ଗଟି ଥିଲା ମଧୁବାବୁଙ୍କ ପ୍ରାଣର କଥା । ସେ ଓଡ଼ିଶାର କଳା, ଶିଳ୍ପ, ଭାସ୍କର୍ଯ୍ୟର ଟେକ ରଖିଲେ । ଦେବାଳିଆ ହୋଇଗଲେ । ଏହାର କରୁଣ ନମୁନାଟିଏ । ଜୀବନର ସାୟାହ୍ନ କଟକର ଗୋଟେ ବସ୍ତି, ନଳକୂଅଟିଏ ଖୋଳାହେବ । ଏଥି ପାଇଁ ଟ ୫୦୦ ଙ୍କା ପ୍ରଦାନର ପ୍ରତିଶ୍ରୁତି । କରୁଣାମୟଙ୍କ ଅପାର ଦୟା, ମହଜିଲଟିଏ ହଠାତ୍ ଟ ୧୦୦୦ଙ୍କା ଆଣି ପହଞ୍ଚିଲା । ମଧୁବାବୁ ଝିଅ ଶୈଳବାଳାଙ୍କୁ ଡାକିଲେ । ତାଙ୍କରି ହାତରେ ପଠାଇଦେଲେ ମୁନ୍‌ସିପାଲିଟି ଚେୟାରମ୍ୟାନ୍‌ଙ୍କ ପାଖକୁ । ଟ୍ୟୁବ୍‌ୱେଲ୍‌ଟିଏ ବସ୍ତିରେ ବସାଗଲା । ମଧୁସୂଦନ ଜଣେ ମଣିଷ ପରି ମଣିଷ । ଉତ୍କଳମଣିଙ୍କୁ ବାଦ୍ ଦେଲେ ସମ୍ଭବତଃ ତାଙ୍କଠାରୁ ଅଧିକ ଶୁଦ୍ଧପୂତ ମଣିଷଟିଏ ବିରଳ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣର ସେ ଥିଲେ ନାୟକ ମାତ୍ର ସେ ସୁଖ ଦେଖିବା ତାଙ୍କ କପାଳରେ ନଥିଲା । ସେଇ ଓଡ଼ିଆଟିକୁ ଇଂରେଜମାନେ ଶ୍ରଦ୍ଧା କରୁଥିଲେ, ବହୁତ ସମ୍ମାନ ମଧ୍ୟ ଦେଉଥିଲେ । ତାଙ୍କ ମହାପ୍ରୟାଣ ହେଲା । ଓଡ଼ିଶା ଡିଭିଜନର କମିଶନର ଇ.ଏସ୍. ହରନଲ ପଠାଇଲେ ଶୋକ ବାର୍ତ୍ତାଟିଏ । ସେଦିନ ବିଘା ପର୍ବତ ଉପରେ ଠିଆହୋଇଥିଲେ । ମୋଜେସ୍ । ଦେଖୁଥିଲେ ଶିଷ୍ୟଙ୍କର ବାସ ଭୂଇଁ । ପର୍ବତ ତଳକୁ ପୂର୍ଣ୍ଣ ଦୃଷ୍ଟିରେ ଦେଖୁ ଦେଖୁ ପ୍ରାଣ ଚାଲିଗଲା । ଠିକ୍ ସେମିତି ମଧୁସୂଦନ ଦାସ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରାକ୍ କାଳ, ସେ ଏ ସଂସାରୁ ବିଦାୟ ନେଇ ଚାଲିଗଲେ । ଏହା ହିଁ ଥିଲା ହରନଲଙ୍କ ଶୋକବାର୍ତ୍ତାର ସାରକଥା । ଜଣେ ଖାଣ୍ଟି ଓଡ଼ିଆ ମଧୁବାବୁଙ୍କ ପାଇଁ ଏହା କ'ଣ ଶ୍ରେଷ୍ଠ ସମ୍ମାନବୋଧ ନୁହେଁ କି ?

ପାଳିତ ହୋଇଛି ସ୍ୱତନ୍ତ୍ର ଓଡ଼ିଶା ଦିବସ । ସମୟ ବଦଳିଛି । ଏବେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତାପ୍ରାପ୍ତ । ଉଠ, ଜାଗ୍ରତ ହୁଅ ଉତ୍କଳ ସନ୍ତାନଗଣ । ଭକ୍ତିପୂତ ପ୍ରଣାମ ଜଣାଅ ସେଇ ମହାନ ଓଡ଼ିଆ ଉତ୍କଳ ଗୌରବଙ୍କୁ । ଜାତି-ପ୍ରେମ-ବହ୍ନି ପୁନଃ ପ୍ରଜ୍ୱଳିତ କର ତାହା ହିଁ ହେବ ତାଙ୍କ ଅମର ଆତ୍ମା ପାଇଁ ସର୍ବଶ୍ରେଷ୍ଠ ସମ୍ମାନ ।

---

ସା/ପୋ: ପୁରୁଷୋତ୍ତମପୁର
କେନ୍ଦ୍ରାପଡ଼ା

# ବଡ଼ଗଡ଼ର ଇତିହାସ ଓ ଐତିହ୍ୟର ସିଂହାବଲୋକନ

ଦିଲ୍ଲୀପ ହାଲି

ବଡ଼ଗଡ଼ ଗ୍ରାମଟି ବର୍ତ୍ତମାନ ପୂର୍ବ ଓ ପଶ୍ଚିମ ଦୁଇ ଭାଗରେ ବିଭକ୍ତ ହୋଇ ଆମ ରାଜଧାନୀର ଏକ ଅଂଶ ଭାବରେ ରହିଛି । ଏହି ସ୍ଥାନଟିର ନାମ ପଚିଶ ଶହ ବର୍ଷ ପୂର୍ବେ କ'ଣ ଥିଲା, ତାହା ଜଣାନଥିଲେ ମଧ୍ଯ ଏହାର ସ୍ଥାନ ମହତ୍ତ୍ୱପୂର୍ଣ୍ଣ ହୋଇଆସିଛି । ଭୁବନେଶ୍ୱର ଉତ୍ତର ଦିଗକୁ ଏହି ସ୍ଥାନ ଖଣ୍ଡଗିରି ଓ ଧଉଳିଗିରି ମଧ୍ୟବର୍ତ୍ତୀ ପୁରାଣ ଯୁଗର ପଞ୍ଚକୋଶୀର ଅଂଶ ବିଶେଷ । ଏହି ସ୍ଥାନରେ ପ୍ରାଚୀନ ଯୁଗର ଇତିହାସର ଅଲିଭା ସ୍ମୃତି ହୋଇ ରହିଛି ।

ସୋମବଂଶୀ ବା କେଶରୀ ବଂଶର ରାଜା ଯଯାତି କେଶରୀ ଓଡ଼ିଶା ଅଧିକାର କରିବା ପରେ ଲକ୍ଷ୍ମଣେଶ୍ୱର ଦେଉଳ ପରି ଅନେକ ଦେଉଳର ପଶ୍ଚିମକୁ ଅଧ କିଲୋମିଟର ଦୂରରେ ଏକ ପ୍ରାସାଦ ଦୁର୍ଗ ନିର୍ମାଣ କରିଥିଲେ। ତାହା ସିଂହଗଡ ବା ବୃହଦ୍ଦୁର୍ଗ । ଏହି ନାମର ଅପଭ୍ରଂଶ ବଡଗଡ । ଏହି ନବର ସ୍ଥାନାନ୍ତରିତ ହେଲା ଲିଙ୍ଗରାଜ ମନ୍ଦିର ନିର୍ମାଣ ବେଳେ ତା'ର ଦକ୍ଷିଣକୁ । କଳିଙ୍ଗ ରାଜ୍ୟର ରାଜଧାନୀ । ପୂର୍ବ ଗଡଟି ସମତଳ କରାଯାଇ ବର୍ତ୍ତମାନ ସେଠାରେ ରାଜ୍ୟ ସଂଗ୍ରହାଳୟ ନିର୍ମିତ ହୋଇଅଛି । ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ଶତ୍ରୁଘ୍ନେଶ୍ୱର ଦେଉଳଗୁଡିକ ଶୈଳୋଦ୍ଭବ ବଂଶୀୟ ରାଜାଙ୍କ ଦ୍ୱାରା ଓଡ଼ିଶାରେ ପ୍ରାଚୀନତମ ମନ୍ଦିର । ଧଉଳି ପାହାଡର ଚତୁଃପାର୍ଶ୍ୱରେ ମହାଯାନ ବୌଦ୍ଧ ଓ ଖଣ୍ଡଗିରି, ଉଦୟଗିରିରେ ଜୈନ ପ୍ରଭାବକୁ ପ୍ରତିହତ କରିବା ପାଇଁ ଏହି ସ୍ଥାନଟିକୁ ଶୈବ ପୃଷ୍ଠପୋଷକ ରାଜଶକ୍ତି ବାଛି ନେଇଥିଲେ ସପ୍ତମ ଶତାବ୍ଦୀରେ । ଇତି ପୂର୍ବରୁ ଗୌଡ ଦେଶର ରାଜା ଶଶାଙ୍କ ଏହି ରାଜ୍ୟ ଅଧିକାର କରି ବୌଦ୍ଧସ୍ତୂପମାନ ନଷ୍ଟ କରି ଦେଇ ତ୍ରିଭୁବନେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ନବମ ଶତାବ୍ଦୀରେ ସେହି ସ୍ଥାନରେ ବର୍ତ୍ତମାନର ବିଖ୍ୟାତ ଲିଙ୍ଗରାଜ ମନ୍ଦିର ।

ପ୍ରଖ୍ୟାତ ଐତିହାସିକ ପ୍ରତ୍ନତତ୍ତ୍ୱବିତ୍ ଆଲେକ୍‌ଜାଣ୍ଡାର କନିଂ ହାମ୍‌ଙ୍କ ନିର୍ଦ୍ଦେଶରେ ଲେଫ୍ଟନାଣ୍ଟ କିଟୋ ଧଉଳି ପାହାଡର ଶୈଳଲେଖକୁ ବହୁ କଷ୍ଟରେ କପି କରି ପଠାଇଲେ । ଭଗବାନ ଲାଲ୍ ଇନ୍ଦ୍ରାଜୀ ଏହି ଲେଖାର ପାଠୋଦ୍ଧାର କରିବାକୁ ସମର୍ଥ ହେଲେ । ଏହି ପ୍ରସ୍ତର ଖୋଦିତ ଅନୁଶାସନ ମଗଧ ସମ୍ରାଟ ଅଶୋକଙ୍କ ଦ୍ୱାରା କଳିଙ୍ଗବାସୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ । ଏହା ତିନି କିଲୋମିଟର ଉତ୍ତର ଦିଗରେ ଥିବା ତୋଷାଳୀ ଦୁର୍ଗରେ ଶାସନ କାର୍ଯ୍ୟରେ ନିଯୁକ୍ତ ରାଜ କୁମାର, ମହାମାତ୍ୟମାନଙ୍କୁ ଆଦେଶ । କଳିଙ୍ଗର ଅନ୍ଧକାରାଚ୍ଛନ୍ନ ଇତିହାସ ତଥା ଭାରତବର୍ଷର ସେସମୟର ସମାଜର ଲିପିବଦ୍ଧ ରକ୍ତାକ୍ତ ସଂଗ୍ରାମର ଚିତ୍ର ପରିପୁଷ୍ଟ ହେଲା 'ଏହି ଧର୍ମଲିପି ଦେବପ୍ରିୟଙ୍କ ଆଦେଶରେ ପର୍ବତରେ ଲେଖାଯାଇଛି' । କଳିଙ୍ଗ ବିଜୟ ପରେ ୨୯ ବର୍ଷ କାଳ ଉକ୍ତ ରାଜ୍ୟକୁ ତୋଷାଳୀ ନଗରୀରୁ ଶାସନ କରିଥିଲେ ।

କଳିଙ୍ଗ ଯୁଦ୍ଧରେ ଅନେକ ସୈନ୍ୟ ମୃତ, ଅନେକ ସୈନ୍ୟ କାରାରୁଦ୍ଧ ଓ ଏହାର ବହୁଗୁଣ ଲୋକ ଆହତ ଓ କ୍ଷତିଗ୍ରସ୍ତ ହୋଇଥିବାରୁ ଏହାର ଭୟାବହତା ବର୍ଣ୍ଣନା କରିଥିବା ତ୍ରୟୋଦଶ ଅନୁଶାସନଟି 'କଳସୀ'ରେ ଖୋଦିତ ଅଛି । ଏହି ଯୁଦ୍ଧ ପ୍ରସିଦ୍ଧ ଐତିହାସିକ କେଦାରନାଥ ମହାପାତ୍ରଙ୍କ ଭାଷାରେ, 'ତୋଷାଳୀ ପଶ୍ଚିମ ଭାଗରେ ବିସ୍ତୀର୍ଣ୍ଣ ସମତଳ ଟାଙ୍ଗର ଭୂମିରେ (ଭୀମଟାଙ୍ଗୀ) କଳିଙ୍ଗ ବାହିନୀ ସମରାନଳରେ ଶେଷ ଜୀବନାହୂତି ପ୍ରଦାନ କରିଥିଲେ।' ଉଦୟଗିରି ହାତୀଗୁମ୍ଫା ଶିଳାଲେଖର ତ୍ରୟୋଦଶ ଧାଡିରେ ଅଛି, 'ପଞ୍ଚମ ବର୍ଷ ବେଳେ

ନନ୍ଦ ରାଜାଙ୍କ ଦ୍ୱାରା ଶହେ ତିନିବର୍ଷ ପୂର୍ବେ ଉଦ୍‌ଘାଟିତ ପ୍ରଣାଳୀକୁ ତନୁସୁଲୀ ବାଟେ ନଗର ମଧ୍ୟକୁ ପ୍ରବେଶ କରାନ୍ତି ।' ଏହି ଶିଳାଲେଖ ଐର ସମ୍ରାଟ୍ ମହାମେଘବାହନ ଖାରବେଳଙ୍କ ଆଦେଶରେ ଉତ୍କୀର୍ଣ୍ଣ । ଏଥିରେ ଖାରବେଳ ସ୍ୱୀକାର କରିଛନ୍ତି ଅଶୋକଙ୍କ ପୂର୍ବରୁ ନନ୍ଦବଂଶ ମହାପଦ୍ମନନ୍ଦ କଳିଙ୍ଗ ଅଧିକାର କରି ଯେଉଁ ପୟ ପ୍ରଣାଳୀ ଖୋଳାଇ ଥିଲେ, ତାହା ଗଂଧବତୀ ବା ଗଙ୍ଗୁଆ ତୋଷାଳୀ ଗଡର (ଶିଶୁପାଳଗଡ) ପରୀଖାକୁ ଓ କଳିଙ୍ଗ ନଗରକୁ ଜଳ ସରବରାହ କରୁଥିଲା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ଏହାକୁ ଅଧିକାର କଲାବେଳେ ନନ୍ଦବଂଶୀ ରାଜା ଯୁଦ୍ଧ କରି ସହସ୍ର ସହସ୍ର କଳିଙ୍ଗ ସେନା ନିହତ କରିଥିଲେ। ଅଶୋକଙ୍କ କଳିଙ୍ଗ ଆକ୍ରମଣର ଦୁଇ ଶହ ବର୍ଷ ଭିତରେ କଳିଙ୍ଗ ସମ୍ରାଟ୍ ଖାରବେଳ ଦୁଇଥର ଭାରତର ଉତ୍ତର ପଶ୍ଚିମ ଓ ଦକ୍ଷିଣ ଦିଗକୁ ଅଭିଯାନ ଚଳାଇ ବହୁ ରାଜ୍ୟ ଓ ରାଜାଙ୍କୁ ପରାଭୂତ କରିଥିଲେ । ମଗଧ ରାଜ ବୃହସ୍ପତି ମିତ୍ରଙ୍କୁ ଦୁଇଥର ପରାସ୍ତ କରି ତିନିଶତ ବର୍ଷପୂର୍ବେ ନନ୍ଦରାଜାଙ୍କ ଦ୍ୱାରା ଅପସାରିତ ଜିନାସନକୁ ଫେରାଇ ଆଣିଥିଲେ । ଖଣ୍ଡଗିରି ଓ ଉଦୟଗିରିରେ ପ୍ରସିଦ୍ଧ କାରୁକଳା ବିଶିଷ୍ଟ ଗୁମ୍ଫାମାନ ଆହତମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ମାତ୍ର ତେରବର୍ଷ ରାଜତ୍ୱ କରିଥିଲେ ମଧ୍ୟ ଏପରି ପ୍ରତାପଶାଳୀ ଶାସକ କଳିଙ୍ଗରେ ନଥିଲେ । ସେ ଜୈନ ଧର୍ମର ପୃଷ୍ଠପୋଷକ ଓ ତାଙ୍କ ଦ୍ୱାରା ଜୈନ ଧର୍ମର ବହୁ ପ୍ରସାର ହୋଇଥିଲା । ମାତ୍ର ତାଙ୍କ ପରେ ତାଙ୍କ ବଂଶଧରମାନଙ୍କ ସମ୍ବନ୍ଧରେ ବିଶେଷ ତଥ୍ୟ ମିଳେ ନାହିଁ ।

କିଛି କାଳ ପାଇଁ ଆନ୍ଧ୍ର ସାତବାହନ ନରପତିଗଣ କଳିଙ୍ଗ ଅଧିକାର କରିଥିଲେ । ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କ ବହୁ ବର୍ଷ ରାଜତ୍ୱରୁ ଜଣାଯାଏ । ଲକ୍ଷ୍ମଣେଶ୍ୱର ଗ୍ରୁପ୍‌ର ମନ୍ଦିର ପାଶୁପାତ ସଂପ୍ରଦାୟ ଶୈବ ସନ୍ନ୍ୟାସୀମାନଙ୍କ ପ୍ରଭାବରେ ପ୍ରତିଷ୍ଠିତ ହୋଇଥିଲା । ଏହି ସମୟରେ ବହୁ ବୌଦ୍ଧକୀର୍ତ୍ତି, ସ୍ତୂପ ଓ ସ୍ତମ୍ଭକୁ ବିନାଶ କରି ତତ୍‌ପରିବର୍ତ୍ତେ ଶିବଲିଙ୍ଗର ସ୍ଥାପନ କରାଗଲା । ବଡ଼ଗଡ଼ ଗ୍ରାମର ଭାସ୍କରେଶ୍ୱର ଶିବଲିଙ୍ଗ ଏକ ଅଶୋକ ସ୍ତମ୍ଭ । ଏହି ଅଶୋକ ସ୍ତମ୍ଭକୁ ତିନିଖଣ୍ଡ କରି ସେଥିରୁ ୧୨ ଫୁଟରେ ଏକ ବିରାଟ ଶିବଲିଙ୍ଗ ଯାହା ୪ଖଣ୍ଡ ପ୍ରସ୍ତରରେ ଯୋଡା । ଉପର ଭାଗର ଶୀର୍ଷ ମୁକୁଟ ଓ ଅଶୋକ ଯୁଗର ସିଂହ ବର୍ତ୍ତମାନ ମ୍ୟୁଜିୟମ୍‌ରେ ସଂରକ୍ଷିତ । ବୌଦ୍ଧ ଯୁଗର ଗୁମ୍ଫା, ପଞ୍ଚପାଣ୍ଡବ ଗୁମ୍ଫାରେ, ଶୈବ ନକୁଳିଶ ମୂର୍ତ୍ତି ପୂଜିତ । ଗୋପାଳିନୀ ନାମରେ ପୂଜିତ ଯକ୍ଷ ମୂର୍ତ୍ତି ସାଞ୍ଚିସ୍ତୂପ ଅନୁରୂପ ବୌଦ୍ଧ ଉପଦେବତା । ଏହି ଗ୍ରାମରେ ଥିବା ହାତୀଖାଲ ସବୁ ବୌଦ୍ଧ ଧର୍ମର ପ୍ରତୀକ । ବୁଦ୍ଧଦେବଙ୍କ ମାତା ବୁଦ୍ଧ ଜନ୍ମ ପୂର୍ବ ଧଳା ହାତୀର ସ୍ୱପ୍ନର ପ୍ରତୀକ । ଏହି ଗ୍ରାମରେ ଥିବା ନାଗାର୍ଜୁନ ସ୍ତୂପ ଏକ ପ୍ରସିଦ୍ଧ ବୌଦ୍ଧ ସ୍ତୂପ ଥିଲା ।

ଏହି ଉଦାହରଣରୁ ଜଣାଯାଏ ବୌଦ୍ଧ ପ୍ରଭାବ କୀର୍ତ୍ତି ନଷ୍ଟ କରିବା ପାଇଁ ପାଶୁପାତମାନେ ଭୌମଙ୍କର ଓ କେଶରୀ ବଂଶୀୟ ରାଜାମାନଙ୍କୁ ପ୍ରଭାବିତ କରିପାରିଥିଲେ । ଏକାମ୍ର ପୁରାଣ, କପିଳ ସଂହିତା ଆଦି ଶୈବ ପୁରାଣମାନଙ୍କରେ ବର୍ଣ୍ଣିତ ଦେବାସୁର ଯୁଦ୍ଧରେ ଶୈବମାନେ ନିଜକୁ ଦେବତା ଆସନରେ ବସାଇ ବୌଦ୍ଧମାନଙ୍କୁ ରାକ୍ଷସ ଭାବରେ ଚିତ୍ରଣ କରିଛନ୍ତି । କାଳକ୍ରମେ ବୌଦ୍ଧମାନେ ଜଙ୍ଗଲକୁ ବିତାଡିତ ବା ସମାଜରେ ଅସ୍ପୃଶ୍ୟ ହୋଇଯାଇଛନ୍ତି ।

ମଣିଷ ସମାଜରେ ଶ୍ରେଣୀ ସଂଘର୍ଷ ସବୁଠାରେ ଧର୍ମ ସଂଘର୍ଷ ରୂପରେ ପ୍ରକାଶ ପାଏ । ଭୁବନେଶ୍ୱର, ବଡଗଡ ଓ ଶିଶୁପାଳଗଡକୁ କେନ୍ଦ୍ର କରି ଯେଉଁ ଅଞ୍ଚଳରେ ଭୟଙ୍କର ଯୁଦ୍ଧ, ରକ୍ତପାତ ଓ ସଂଘର୍ଷର ଇତିହାସର ପଦଚିହ୍ନ ରହିଯାଇଛି, ତାହା ଏହି ଅଞ୍ଚଳର ପ୍ରାଧାନ୍ୟ ଯୋଗୁଁ । ଉପକୂଳର ଉର୍ବର ସମତଳ ଅଞ୍ଚଳର ମଧ୍ୟଭାଗରେ ତୋଷାଳୀ ନଗର ଗଢି ଉଠିଥିଲା । ଏହି ରାଜ୍ୟକୁ ଦଖଲ କରିବାକୁ ହେଲେ କେନ୍ଦ୍ରୀୟ ଶାସନ କଳିକୁ ଅଧିକାର କରି ଶାସନ କରିବାକୁ ହେବ । ତେଣୁ ଧଉଳି ଓ ଉଦୟଗିରି ଶାସନର ଇତିହାସ ଓ ସମ୍ବିଧାନ ଭୌମଙ୍କର, କେଶରୀବଂଶ, ଗଙ୍ଗବଂଶ ଓ ସୂର୍ଯ୍ୟବଂଶୀ ରାଜବଂଶ ରାଜତ୍ୱ କରି ଏଠାରେ ବହୁ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରରେ ପୂର୍ଣ୍ଣ କରିଛନ୍ତି । ବଡଗଡ ମୌଜାରେ ପ୍ରସିଦ୍ଧ ଐତିହାସିକ ମନ୍ଦିର ରହିଛି ଯଥା ଭାସ୍କରେଶ୍ୱର, ବ୍ରହ୍ମେଶ୍ୱର, ମେଘେଶ୍ୱର ଓ ରାଜାରାଣୀ । ସୁନ୍ଦର ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ମନ୍ଦିର ମେଘେଶ୍ୱର ଯାହାର ଶିଳାଲେଖ ଲିଙ୍ଗରାଜ ମନ୍ଦିର ପରି ସୁନ୍ଦର । ରାଜରାଣୀରେ 'ଖଜୁରାହୋ'ର ସୌନ୍ଦର୍ଯ୍ୟ ପୂରି ରହିଛି ।

ଏହି ମନ୍ଦିର ଗଠନ ଯୁଗ ପରେ ପରେ ଆସିଲା ଆଫଗାନ୍, ମୋଗଲ ଓ ମରହଟ୍ଟାମାନଙ୍କର ବାରମ୍ବାର ଆକ୍ରମଣ

ଓ ଦଖଲ । ତେଣୁ ଏହି ଅଞ୍ଚଳ ବହୁ କ୍ଷତି ସହିଛି ଓ ଲଢେଇକରି ବଞ୍ଚିରହିଛି ।

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶାରେ ଅରାଜକତା ଦେଖାଗଲା । ଏହାର ସୁଯୋଗ ନେଇ କଳାପାହାଡ ଜଗନ୍ନାଥ ମନ୍ଦିର ଆକ୍ରମଣ କରି ବିଗ୍ରହ ଧ୍ୱଂସ କରିବାରୁ ଜନତା ନିଃସହାୟ ହୋଇପଡିଲେ । ଏହି ଘଡିସନ୍ଧି ମୁହୂର୍ତ୍ତରେ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର, ଖୋର୍ଦ୍ଧା ଭୋଇ ରାଜ ବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ ଖୋର୍ଦ୍ଧା ପାଇକ ବୀରମାନଙ୍କର ସହାୟତାରେ ସ୍ୱତନ୍ତ୍ର ଖୋର୍ଦ୍ଧା ରାଜ୍ୟ ଗଠନ କରି ବରୁଣେଇ ପାହାଡର ଉତ୍ତର ଦିଗରେ ଘଞ୍ଚ ଅରଣ୍ୟ ମଧ୍ୟରେ ନିଜର ରାଜଧାନୀ ପ୍ରତିଷ୍ଠା କରିଥିଲେ ।

କ୍ରମାନ୍ୱୟ ମୋଗଲ ଓ ମରହଟ୍ଟାମାନଙ୍କ ଅଧୀନରେ ଓଡ଼ିଶା ରହିଥିଲା । ଏମାନଙ୍କର ଶୋଷଣରେ ଚାଷୀ, ମୂଲିଆ ଓ ସାଧାରଣ ଲୋକେ ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ ହୋଇଗଲେ । ଖୋର୍ଦ୍ଧା ରାଜାଙ୍କର ଆକବରଙ୍କ ମନ୍ତ୍ରୀ ମାନସିଂହଙ୍କ ସହିତ ଚୁକ୍ତି ଅନୁସାରେ ଖୋର୍ଦ୍ଧା ରାଜ୍ୟରେ ୭୧ଟି ଗଡ ଓ ୨୯ ଗୋଟି ଜମିଦାରୀ ଖୋର୍ଦ୍ଧା ରାଜାଙ୍କ ଅଧୀନରେ ଥିଲା । ଏହି ଜଙ୍ଗଲ ଅଞ୍ଚଳରେ ୧୭ଟି ଶବରଗଡ ଥିଲା ।

୧୮୦୪ ଖ୍ରୀ.ଅ.ରେ ଇଂରେଜମାନେ ଖୋର୍ଦ୍ଧାଗଡ ଆକ୍ରମଣ କରି ଧ୍ୱଂସ କଲେ ଓ ଖୋର୍ଦ୍ଧା ରାଜ୍ୟକୁ ଖାସମାହାଲରେ ପରିଣତ କଲେ । ପ୍ରଧାନ ଗଡଗୁଡିକ ହେଲେ, ରଥିପୁର, ବଡଗଡ, ଶିଶୁପାଳଗଡ, ଝାରପଡା, କପିଳ ପ୍ରସାଦ, ପାତ୍ରପଡା, ଅନ୍ଧାରୁଆ, ଦାରୁଠେଙ୍ଗ, ଗଙ୍ଗପଡା ଇତ୍ୟାଦି । ଏହି ଗଡମାନଙ୍କରେ ଦୁର୍ଗପତି, ଦଳବେହେରା (ମୁସଲମାନ ବା ଖଣ୍ଡାୟତ) ରହି ଗଡର ସୁରକ୍ଷା ଦାୟିତ୍ୱ ନେଉଥିଲେ । ଶତ୍ରୁକୁ ପ୍ରତିରୋଧ କରିବା ଓ ନିଜ ରାଜ୍ୟ ରକ୍ଷା କରିବା ଏହି ଗଡର ମୁଖ୍ୟ କାର୍ଯ୍ୟ । ବଡଗଡ ସମସ୍ତ କଳିଙ୍ଗ ରାଜ୍ୟର କେନ୍ଦ୍ରସ୍ଥଳ ଭାବରେ ଗୌରବ ଅର୍ଜନ କରୁଥିଲା ଏବଂ ରାଜ୍ୟର ଶାସନ କାର୍ଯ୍ୟ ଏହିଠାରୁ ହିଁ ତ୍ୱରାନ୍ୱିତ କରାଯାଉଥିଲା ।

କଳିଙ୍ଗ ଶିଳ୍ପୀଙ୍କର ଅପୂର୍ବ ମନ୍ଦିରମାଳା ଶୋଭିତ ନଗରୀ ସବୁ ଧର୍ମର ପୂଜା ପୀଠ ଓ ସଂସ୍କୃତିର କେନ୍ଦ୍ର । ଏଥିରେ ନାମ ଥିବା ବା ନଥିବା ଚତୁଃପାର୍ଶ୍ୱର ଜନବସତି ରାଜଧାନୀର ଭିତ୍ତିଭୂମି ଇତିହାସର ପ୍ରାକ୍‌କାଳରୁ । **ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର:** ରାମେଶ୍ୱର ମନ୍ଦିରର ସମ୍ମୁଖ ରାସ୍ତାର ଅପରପାର୍ଶ୍ୱରେ ତିନିଗୋଟି ଭଗ୍ନ ମନ୍ଦିର ଦୃଷ୍ଟିକୁ ଆସେ । ତା' ହେଲା ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର । ଏହା ଭୁବନେଶ୍ୱରର ସର୍ବପ୍ରାଚୀନ ମନ୍ଦିର । ଏହା ୭ମ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଶୈଳୋଦ୍ଭବମାନଙ୍କ ରାଜତ୍ୱ ସମୟରେ ନିର୍ମାଣ କରାଯାଇଥିଲା । ଏହି ପୀଠରେ ନକୁଳୀଶ ଶୈବମାନଙ୍କର ଶିବ ମନ୍ଦିର ନିର୍ମାଣ କରାଯାଇଛି । ଏହାର ନିକଟସ୍ଥ ଅଶୋକ କୁଣ୍ଡ ଏବେ ମଧ୍ୟ ଲୋକଲୋଚନକୁ ଆସେ । ଅଶୋକାଷ୍ଟମୀରେ ମଦନମୋହନ ଏଠାରେ ପାଞ୍ଚଦିନ ଅବସ୍ଥାନ କରନ୍ତି ।

**ଭାସ୍କରେଶ୍ୱର:** ଭୁବନେଶ୍ୱରକୁ ଲାଗି ରହିଥିବା ବଡ଼ଗଡ଼ରେ ଗଙ୍ଗୁଆ ନଦୀର ପଶ୍ଚିମକୁ ଅବସ୍ଥିତ ପ୍ରସିଦ୍ଧ ଭାସ୍କରେଶ୍ୱର ଶିବ ମନ୍ଦିର । ଏହି ମନ୍ଦିରରେ ଏକ ବୃହତ୍‌କାର ଲିଙ୍ଗ ପୂଜିତ ହେଉଛନ୍ତି । ଏହାଙ୍କ ଶକ୍ତି ୨୦ ଫୁଟ ପରିଧି ବିଶିଷ୍ଟ ଚାରିଖଣ୍ଡ ପଥରେ ଯୋଡାହୋଇ ତିଆରି କରାଯାଇଛି । ଏଠାରେ ଥିବା ବିଗ୍ରହମାନଙ୍କରୁ ଅନୁମେୟ ଯେ, ଏହି ସ୍ଥାନରେ ବା ଏହାର ନିକଟବର୍ତ୍ତୀ କୌଣସି ସ୍ଥାନରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ପୂର୍ବରୁ ଗୋଟିଏ ବୌଦ୍ଧସ୍ତୂପ ଓ ସ୍ତମ୍ଭ ଥିଲା । ପରବର୍ତ୍ତୀ ସମୟରେ ସ୍ତମ୍ଭଟିକୁ କାଟି ଶିବଲିଙ୍ଗରେ ପରିବର୍ତ୍ତନ ହୋଇଛି । ଭାସ୍କରେଶ୍ୱର ଶିବଲିଙ୍ଗ ସମ୍ବନ୍ଧରେ ଅନେକ ତଥ୍ୟ ମିଳେ । ଏହି ମନ୍ଦିର ନିର୍ମାଣ ପୂର୍ବରୁ ଏଠାରେ ଏକ ବୌଦ୍ଧସ୍ତୂପ ଥିଲା । ରାଧାମୁକୁନ୍ଦ ମୁଖାର୍ଜୀ ମାଟି ଖୋଳି ଏହା ପାଖରୁ ବୌଦ୍ଧ ସ୍ତୂପ ପାଖରେ ଥିବା ରେଲିଙ୍ଗ୍ ବାଡର ଅଂଶ ପାଇଥିଲେ । ତାହା ମ୍ୟୁଜିୟମରେ ସ୍ଥାନିତ । ଏହି ସ୍ଥାନ ବଡଗଡର ଅଂଶ ହୋଇଥିଲେ ମଧ୍ୟ ଏହାକୁ ବର୍ତ୍ତମାନ ବ୍ରହ୍ମେଶ୍ୱର ପାଟଣା ବୋଲି ନାମିତ କରାଯାଇଛି ।

**ଅଶୋକ ସ୍ତମ୍ଭର ମୁକୁଟ :** ଭାସ୍କରେଶ୍ୱର ମନ୍ଦିରର ପଶ୍ଚିମକୁ ଏକ ମାଇଲ୍ ଦୂରରେ ଅବସ୍ଥିତ ରାମେଶ୍ୱର ମନ୍ଦିର ପୋଖରୀ ଅଶୋକ ଝର ପୂର୍ବ ପାଖରେ ବହୁକାଳ ଧରି ଏକ ଶୀର୍ଷମୁକୁଟ ପଡିରହିଥିଲା । ଏହାକୁ ସ୍ଥାନାନ୍ତରିତ କରାଯାଇ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଫାଟକ ନିକଟରେ ରଖାଯାଇଛି । ଏହାର ଉଚ୍ଚତା ୩୨ ଇଞ୍ଚ, ମୋଟା ଅଂଶର ପରିଧି ୧୯ ଫୁଟ ୫ ଇଞ୍ଚ । ଏହାର ତଳପଟ ଗୋଲାକାର ଗର୍ତ୍ତ ହୋଇଥିବାରୁ

ଏକ ଗୋଲାକାର ସ୍ତମ୍ଭର ଅଗ୍ରଭାଗରେ ସ୍ଥାପିତ ହୋଇଥିବା ସମ୍ଭବ । ଏହାର ଉପରିଭାଗ ସମତଳ ଓ ଗୋଲ । ଏହାର କରମଙ୍ଗିଆ ଅଂଶକୁ ଦେଖିଲେ ଏହା ଅଶୋକ ଯୁଗର ଏକ ସ୍ତମ୍ଭ ଉପରେ ପରିଲକ୍ଷିତ ହୋଇଥିବାର ସ୍ପଷ୍ଟ ଜଣାଯାଏ । ଏହାର ଉପରିଭାଗ ସମତଳ ଓ ଗୋଲ । ଏହି ବୃତ୍ତାକାର କ୍ଷେତ୍ରର ଉପରେ ବସାଯାଇଥିବା ପଶୁମୂର୍ତ୍ତିଟିକୁ ଜବତ କରି ରଖିବା ପାଇଁ ଏହାର ଦୁଇପାଖର ଧାରକୁ ଟିକିଏ ଉଚ୍ଚ କରାଯାଇଥିଲା । ଅନ୍ୟାନ୍ୟ ସ୍ଥାନରେ ବିହାରର ନନ୍ଦନଗଡ ଗ୍ରାମ ଓ ପାଟଳୀପୁତ୍ର, ନେପାଳ ରାସ୍ତା ପାଖରେ ଅଦ୍ୟାପି ଦଣ୍ଡାୟମାନ । ଅଶୋକସ୍ତମ୍ଭର ଶୀର୍ଷ ମୁକୁଟ ଦେହରେ ଅବିକଳ ଏପରି କରମଙ୍ଗିଆ କାମ ଦେଖାଯାଏ ।

**ବ୍ରହ୍ମେଶ୍ୱର ମନ୍ଦିର :** ଏହି ମନ୍ଦିରଟିର ଅବସ୍ଥାନ ଲିଙ୍ଗରାଜ ମନ୍ଦିର ପୂର୍ବ ଦିଗରେ ଦୁଇ କିଲୋମିଟର ଦୂର ବଡଗଡ ଗ୍ରାମର ବ୍ରହ୍ମେଶ୍ୱର ପାଟଣା ସୀମାରେ ଅବସ୍ଥିତ । ଶିଳାଲିପିରୁ ଜଣାଯାଏ ଯେ ସୋମବଂଶୀ ରାଜା ଉଦ୍ୟୋତ କେଶରୀଙ୍କର ମାତା କୋଳାବତୀ ଦେବୀଙ୍କ ଦ୍ୱାରା ତାଙ୍କର ଅଷ୍ଟାଦଶ ବର୍ଷ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । ଏହି ମନ୍ଦିରର ଉଚ୍ଚତା ୬୦ ଫୁଟ । ଜଗମୋହନର ଉଚ୍ଚତା ୪୭ ଫୁଟ । ଏହାର ଦୁଇଟି ପ୍ରାଚୀର ରହିଛି । ଭିତର ପ୍ରାଚୀର ମଧ୍ୟରେ ବ୍ରହ୍ମେଶ୍ୱର ମୁଖ୍ୟ ମନ୍ଦିରଟି ପଞ୍ଚରଥ ପ୍ରକାରେ ନିର୍ମିତ । ମୁଖ୍ୟ ମନ୍ଦିରର ଚାରିକୋଣରେ ଚାରିଗୋଟି ମନ୍ଦିର ଓ ଦକ୍ଷିଣ ଦିଗରେ ବ୍ରହ୍ମକୁଣ୍ଡ ନାମରେ ଏକ ସୁନ୍ଦର ପୁଷ୍କରିଣୀ ରହିଛି। ଏସବୁକୁ ଆବଦ୍ଧ କରି ଏକ ବୃହତ ପ୍ରାଚୀର ରହିଛି । ଏଥିରେ ପୂଜିତ ଶିବଲିଙ୍ଗର ଉଚ୍ଚତା ୩.୫୦ ଫୁଟ, ଗୋଲେଇ ୪ଫୁଟ ଏବଂ ୧୦ଫୁଟ ଶକ୍ତି ବିଶିଷ୍ଟ । ମନ୍ଦିରଟି ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ । ବହୁ କ୍ଷେତ୍ରରେ ଏହା ମୁକ୍ତେଶ୍ୱର ମନ୍ଦିରର ମୂର୍ତ୍ତିମାନଙ୍କ ପରି । ସୂର୍ଯ୍ୟ ଉଦୟ ସମୟରେ ଓ ଅସ୍ତ ସମୟରେ ସୂର୍ଯ୍ୟଙ୍କର ପ୍ରଥମ ଲାଲ୍ କିରଣ ଶିବ ଲିଙ୍ଗ ଉପରେ ପଡିଥାଏ । ଏହି ମନ୍ଦିରର ଶିଳାଲିପିଟି ସ୍ଥାନାନ୍ତରିତ ହୋଇଯାଇଛି ଓ ଜେମ୍ସ ପ୍ରିନସେପ ଏସିଆଟିକ ସୋସାଇଟି ଜର୍ଣ୍ଣାଲରେ ଅବତାରଣା କରିଛନ୍ତି ।

**ମେଘେଶ୍ୱର:** ବଡଗଡ ଗ୍ରାମର ଉତ୍ତର-ପୂର୍ବକୁ ମେଘେଶ୍ୱର ମନ୍ଦିର ଏକ ବିରାଟ ପ୍ରାଚୀର ମଧ୍ୟରେ ଅବମିତ । ଏହି ମନ୍ଦିର ଗଙ୍ଗବଂଶର ରାଜା ରାଜରାଜ ଦେବଙ୍କର ଶାଳକଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି ମନ୍ଦିରର ମୁଖ ପଶ୍ଚିମ ଦିଗକୁ । କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରର ମୁଖଶାଳାଟି କାରୁକାର୍ଯ୍ୟବିହୀନ । ଏହି ମନ୍ଦିରର ଉଚ୍ଚତା ୫୧ ଫୁଟ । ସପ୍ତରଥ ପ୍ରଣାଳୀରେ ଏହା ନିର୍ମିତ । ନିକଟରେ ମେଘତୀର୍ଥ ପୁଷ୍କରିଣୀ ଓ ତା' ମଧ୍ୟରେ ଏକ ଦୀପଦାଣ୍ଡୀ ଏବେ ଦୃଷ୍ଟି ଆକର୍ଷଣ କରେ । ଏହି ମନ୍ଦିରର ଶିଳାଲିପି ଅନନ୍ତ ବାସୁଦେବଙ୍କ ମନ୍ଦିରର ପଶ୍ଚିମ ପାଚେରୀ କାନ୍ଥରେ ସ୍ଥାପନ କରାଯାଇଛି । ଉକ୍ତ ମନ୍ଦିରରେ ଦେବଦାସୀ ପ୍ରଥା ପ୍ରଚଳନ ଥିଲା ।

**ଶିଳାଲିପି:** ଶ୍ରୀ ସ୍ୱପ୍ନେଶ୍ୱର ନାମ ନାମ ସୁରମା ଦେବୀଚ ସ୍ୱାର୍ଥା ଦ୍ୱୟ ଏକଃ କ୍ଷ୍ମାତଳ-ମଣ୍ଡନାୟ ସକଳାଧରସ୍ତଥାନ୍ୟା ଜଗ ଦାରିଦ୍ର୍ୟ ଜ୍ୱରନାଶମୟ ଜଗତୀ ଚିନ୍ତାମଣିଃ-ଶ୍ରୀ ରଭୂତ୍ ।

**ରାଜାରାଣୀ ମନ୍ଦିର:** ବଡଗଡର ଦକ୍ଷିଣ ପାର୍ଶ୍ୱରେ ଏକାଦଶ ଶତାବ୍ଦୀରେ ନିର୍ମିତ ୫୯ ଫୁଟ ଉଚ୍ଚତା ବିଶିଷ୍ଟ ରାଜରାଣୀ ମନ୍ଦିର ଏବେ ମଧ୍ୟ ଶ୍ରେଷ୍ଠ ଭାସ୍କର୍ଯ୍ୟର ପରିଚୟ ଦିଏ । ଉତ୍କୃଷ୍ଟ କାରୁକାର୍ଯ୍ୟ ବିଶିଷ୍ଟ ଈଷତ୍ ଲାଲ୍ ରାଜରାଣିଆ କନ୍ଦା ପଥରରେ ନିର୍ମିତ ଏହି ମନ୍ଦିରଟି । ଆନୁମାନିକ ୧୦୦୦ରୁ ୧୦୨୩ ଖ୍ରୀଷ୍ଟାବ୍ଦରେ କେଶରୀ ବଂଶର ରାଜା ଇନ୍ଦ୍ରରଥଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ଶିଖର ଦେହରେ ମୂଳ ମନ୍ଦିର ଭଳି କ୍ଷୁଦ୍ର ମନ୍ଦିରମାନ ରହିଛି । ଉକ୍ତ ମନ୍ଦିରରେ ମୂର୍ତ୍ତି ନାହିଁ ।

**ପଞ୍ଚପାଣ୍ଡବ ଗୁମ୍ଫା:** ଭାସ୍କରେଶ୍ୱର ମନ୍ଦିର ପଶ୍ଚିମକୁ ବଡଗଡ ଗ୍ରାମର ସନ୍ନିକଟରେ ପଞ୍ଚପାଣ୍ଡବ ଗୁମ୍ଫା ରହିଛି । ଏହା ବୌଦ୍ଧ ସନ୍ନ୍ୟାସୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ପରେ ଏହାକୁ ପାଶୁପାତ ଶୈବମାନେ ଅଧିକାର କରିନେଲେ । ଏଥିରେ ନକୁଳୀଶ ମୂର୍ତ୍ତି ବର୍ତ୍ତମାନ ପୂଜିତ ।

ଏହି ଗୁମ୍ଫାଗୁଡିକ ମାଙ୍କଡା ପଥରରେ ଖୋଦିତ । ସେଥିମଧ୍ୟରୁ ଅଧିକାଂଶ ଲୋପ ପାଇଗଲାଣି । କେବଳ ପଞ୍ଚପାଣ୍ଡବ ନାମରେ ବିଖ୍ୟାତ ଗୁମ୍ଫାଗୁଡିକ ଏ ପର୍ଯ୍ୟନ୍ତ ବିଦ୍ୟମାନ ।

**ବୁଦ୍ଧେଶ୍ୱରୀ ମନ୍ଦିର:** ବଡଗଡ ଗ୍ରାମର ଉତ୍ତରକୁ ବୁଦ୍ଧେଶ୍ୱରୀ ମନ୍ଦିର ଅବସ୍ଥିତ । ଏହା ଭୁବନେଶ୍ୱରର ରକ୍ଷାକର୍ତ୍ତ୍ରୀ ଦେବୀ ଭାବରେ ପ୍ରତିଷ୍ଠା ହୋଇଥିଲେ ବୋଲି ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଜଣାଯାଏ । ଏହି ମନ୍ଦିରଟିର ଗଠନ ସମୟ ନବମ

ଶତାବ୍ଦୀ । ବର୍ତ୍ତମାନ ଏହି ମନ୍ଦିରଟି ରାଜଧାନୀର ଏକ ମୁଖ୍ୟ ମନ୍ଦିରଭାବେ ମୁଣ୍ଡ ଟେକିଛି । ଏହି ମନ୍ଦିରଟି ବୌଦ୍ଧଧର୍ମର ନିଦର୍ଶନ । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଉକ୍ତ ମନ୍ଦିରର ପ୍ରସିଦ୍ଧି ଉଲ୍ଲିଖିତ ।

**ପତିତପାବନ ମନ୍ଦିର:** ଖୋର୍ଦ୍ଧାରାଜା ପୁରୀରେ ଅବସ୍ଥାନ କରିବା ସମୟରେ ବୃହତ୍ ଗଡରୁ ପତିତପାବନ ମୂର୍ତ୍ତିକୁ ବଡଗଡ ଅଧିବାସୀମାନଙ୍କ ହାତରେ ଅର୍ପଣ କରିଥିଲେ । ଅଧିବାସୀମାନେ ଗଡଦେଉଳର କନ୍ଦା ପଥରରେ ଗ୍ରାମ ମଧ୍ୟରେ ଏକ ମନ୍ଦିର ନିର୍ମାଣ କରି ପତିତପାବନକୁ ସ୍ଥାପନ କରିଛନ୍ତି ଓ ଇଷ୍ଟ ଦେବତା ରୂପେ ପୂଜା କରୁଅଛନ୍ତି ।

**ଗୋପାଳୁଣୀ:** ବଡଗଡ ଗ୍ରାମର ପୂର୍ବଦିଗରେ ଗୋପାଳୁଣୀ ମନ୍ଦିର ଅବସ୍ଥିତ । ଓଡ଼ିଶାର ପ୍ରାଚୀନତମ ବୌଦ୍ଧ ଯକ୍ଷମୂର୍ତ୍ତିମାନଙ୍କ ମଧ୍ୟରୁ ଏହା ଅନ୍ୟତମ । ଏହି ଯକ୍ଷମୂର୍ତ୍ତିଟି ଏବେ ଗୋପାଳୁଣୀ ନାମରେ ପୂଜିତ । ଏଠାରେ ଏକ ସୁଶୋଭିତ ପୁଷ୍କରିଣୀ ଦୃଷ୍ଟିଗୋଚର ହୁଏ । ଗ୍ରାମର ଅଧିବାସୀମାନେ ଏହାକୁ ବ୍ୟବହାର କରୁଛନ୍ତି ।

**ନାଗାର୍ଜ୍ଜୁନ ଡିହ:** ବଡଗଡ ଗ୍ରାମର ସମୀପବର୍ତ୍ତୀ ଅଧୁନା ବକ୍ସି ଜଗବନ୍ଧୁ ନଗରଠାରେ ଏକ ବୌଦ୍ଧସ୍ତୂପ ରହିଥିଲା । ତାହା ବୌଦ୍ଧ ଦାର୍ଶନିକ ନାଗାର୍ଜ୍ଜୁନ ସ୍ତୁପର ଅପଭ୍ରଂଶ । ଏହାକୁ ସମତଳ କରାଯାଇ ବାସସ୍ଥାନ କରାଯାଇଛି ।

**ହାତୀଖାଲ:** ଏହି ମୌଜାରେ ପାଞ୍ଚୋଟି ଏଲ୍ ଆକାରରେ ପଥରକଟା ଖାଲକୁ ସ୍ଥାନୀୟ ଲୋକେ ହାତୀଖାଲ କହନ୍ତି । ମାତ୍ର ବୁଦ୍ଧଦେବଙ୍କର ମାତା ବୁଦ୍ଧ ଜନ୍ମ ପୂର୍ବରୁ ଏକ ଧଳା ହାତୀର ସ୍ୱପ୍ନ ଦେଖିଥିଲେ ଯେ ଧଳା ହାତୀ ତାଙ୍କ କୁକ୍ଷି ମଧ୍ୟରେ ପଦ୍ମ ଉପସ୍ଥାପନ କରୁଛି । ତେଣୁ ଏପରି ଖାଲକୁ ବୌଦ୍ଧମାନେ ପବିତ୍ର ଚିହ୍ନ ଭାବରେ ବହୁ ସ୍ଥାନରେ ରଖିଯାଇଛନ୍ତି । ବର୍ତ୍ତମାନ ସେସବୁ ସ୍ଥାନକୁ ବାସସ୍ଥାନ ରୂପେ ବ୍ୟବହାର କରାଯାଉଅଛି ।

**ଲକ୍ଷ୍ମୀସାଗର:** ଗଙ୍ଗେଶ୍ୱର ଦେବଙ୍କର ଅଷ୍ଟରାଣୀଙ୍କ ମଧ୍ୟରୁ ଅନ୍ୟତମ ରାଣୀ ଲକ୍ଷ୍ମୀଦେବୀ ବିନ୍ଦୁସାଗରଠାରୁ ବୃହତ୍ତର ଏକ ପୁଷ୍କରିଣୀ ଖୋଳାଇ ଥିଲେ, ତା'ର ନାମ ଲକ୍ଷ୍ମୀସର । ସେହି ଲକ୍ଷ୍ମୀସର ମଝିରେ ଏକ କନ୍ଦା ପଥର ନିର୍ମିତ ଏକ ଦୀପଦାଣ୍ଡୀ ଥିଲା, ସେଥିରେ ବୁଦ୍ଧେଶ୍ୱର ଠାକୁର ଚାପ ଖେଳିବା ପାଇଁ ଯାଉଥିଲେ । ତା' ପାଖରେ ଏକ ବ୍ରାହ୍ମଣ ଶାସନ ବସାଇଥିଲେ, ତା'ର ନାମ ଲକ୍ଷ୍ମୀସାଗର ।

**ଚିନ୍ତାମଣିଶ୍ୱର ମନ୍ଦିର:** ଗଙ୍ଗେଶ୍ୱର ଦେବ ଚିନ୍ତାମଣିଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ ଏବଂ ପ୍ରତ୍ୟେକ ଦିନ ସେ ଏହି ମନ୍ଦିରରେ ପୂଜାର୍ଚ୍ଚନା କରୁଥିଲେ। ଏହି ମନ୍ଦିର ପରିସରରେ ଏକ ଗଣେଶ ମୂର୍ତ୍ତି ଏବେ ମଧ୍ୟ ବିଦ୍ୟମାନ ।

**ଖଣ୍ଡଗିରି:** କଳା ଭାସ୍କର୍ଯ୍ୟରେ ପରିପୂର୍ଣ୍ଣ ଖଣ୍ଡଗିରି ପାହାଡ ବର୍ତ୍ତମାନ ରାଜଧାନୀର ଏକ ପ୍ରମୁଖ ଅଂଶ ହୋଇଯାଇଛି । ଏହାର ଶିଖରରେ ଏକ ଜୈନ ମନ୍ଦିର ଦୃଷ୍ଟିକୁ ଆସେ । ସଂସ୍କୃତ ପୁରାଣରେ ଏହା ଖଣ୍ଡଚଳ ରୂପେ ବର୍ଣ୍ଣିତ ହୋଇଛି । ଏହାର ଅନ୍ୟନାମ କୁମାର ପର୍ବତ । ଏହିଠାରୁ ଧଉଳି ପର୍ଯ୍ୟନ୍ତ ଅଞ୍ଚଳଟି ପଞ୍ଚକୋଶୀ ନାମରେ ନାମିତ । ଏହା କଳିଙ୍ଗ ସ୍ଥାପତ୍ୟ କଳାର ଆଦ୍ୟ ବିକାଶ । ଅନେକଗୁଡିଏ ଗୁମ୍ଫା ଧ୍ୱଂସପ୍ରାପ୍ତ । ବର୍ତ୍ତମାନ ଏଠାରେ ୧୯ଟି ଗୁମ୍ଫା ଦୃଷ୍ଟିରେ ପଡେ । ତତ୍ତ୍ୱଗୁମ୍ଫା (କ), ତତ୍ତ୍ୱଗୁମ୍ଫା (ଖ), ଖୋଲା ଗୁମ୍ଫା, ତେନ୍ତୁଳିଆ ଗୁମ୍ଫା, ଖଣ୍ଡଗିରି ଗୁମ୍ଫା, ନବମୁନୀ ଗୁମ୍ଫା, ବାରଭୁଜା ଗୁମ୍ଫା, ତ୍ରିଶୂଳ ଗୁମ୍ଫା, ଲଲାଟେନ୍ଦୁ ଗୁମ୍ଫା, ଅନନ୍ତ ଗୁମ୍ଫା, ଆକାଶ ଗଙ୍ଗା ଗୁମ୍ଫା, ଜୈନ ମନ୍ଦିର, ଦେବ ସଭା ଓ ଭଗ୍ନ ଗୁମ୍ଫାଗୁଡିକ ଅଦ୍ୟାବଧି ବିଦ୍ୟମାନ । ମାଘ ସପ୍ତମୀରେ ଏଠାରେ ଏକ ବଡ ଧରଣର ମେଳା ଅନୁଷ୍ଠିତ ହୁଏ ।

**ଉଦୟଗିରି:** ଖଣ୍ଡଗିରିର ଉତ୍ତର ଦିଗରେ ଅବସ୍ଥିତ ଉଦୟଗିରି ପାହାଡ ଉଦୟଗିରିରେ ଧର୍ମଭାବ ସହିତ ରାଜନୈତିକ, ପାରିବାରିକ ସଭ୍ୟତା ଓ ସ୍ଥାପତ୍ୟ ଆଦିର ବହୁମୁଖୀ ପ୍ରତିଭାର ଚିହ୍ନ ରହିଛି । ଏହି ପାହାଡର ପୂର୍ବନାମ ଥିଲା କୁମାରୀ ପର୍ବତ । ଏଥିରେ କେତେକ ପ୍ରଧାନ ଗୁମ୍ଫାର ନାମ ଉଲ୍ଲେଖଯୋଗ୍ୟ । ରାଣୀହଂସପୁର, ସଂଗୀତକାର, ବାଜାଦାର, ଛୋଟହାତୀ ଗୁମ୍ଫା, ଅଳକା ପୁରୀ, ଜୟବିଜୟ ଗୁମ୍ଫା, ଠାକୁରାଣୀ ଗୁମ୍ଫା, ପନସ ଗୁମ୍ଫା, ପାମଳପୁରୀ ଗୁମ୍ଫା, ମଞ୍ଚପୁରୀ ଗୁମ୍ଫା, ଗଣେଶ ଗୁମ୍ଫା, ଧାନଘର ଗୁମ୍ଫା, ହାତୀଗୁମ୍ଫା, ସର୍ପଗୁମ୍ଫା, ବାଘଗୁମ୍ଫା, ହରିଦାସ ଗୁମ୍ଫା, ଜମେଶ୍ୱର ଗୁମ୍ଫା, ଜଗନ୍ନାଥ ଗୁମ୍ଫା ଓ ରୋଷେଇ ଗୁମ୍ଫା ଇତ୍ୟାଦି । ଜଣାଯାଏ ଯେ

ରାଣୀହଂସପୁରରେ ଖାରବେଳ ଯାତ୍ରା ଅଭିନୟ ପ୍ରଦର୍ଶନ କରାଉଥିଲେ ରାଜପରିବାର ପାଇଁ । ଏହାର ନାମ ବ୍ୟାଜୋକ୍ତି । ଏହାଦ୍ୱାରା ସୈନ୍ୟମାନଙ୍କ ମଧ୍ୟରେ ସାଂସ୍କୃତିକ ମନୋଭାବ ଜାଗ୍ରତ ହେବା ସଙ୍ଗେ ସଙ୍ଗେ ଯୁଦ୍ଧର ଭାବପ୍ରବଣତା ସୃଷ୍ଟି କରାଯାଉଥିଲା । ସେ ଥିଲେ ନିଜେ ନୃତ୍ୟ, ଗୀତ ଓ ସଂଗୀତ ପ୍ରିୟ । ହାତୀଗୁମ୍ଫାର ଖୋଦିତ ଲିପି ଖାରବେଳଙ୍କ ରାଜତ୍ୱର ବୀରତ୍ୱପୂର୍ଣ୍ଣ କାହାଣୀ ଓ କଳିଙ୍ଗର ସ୍ୱର୍ଣ୍ଣ ଯୁଗର ଅତୁଳନୀୟ ବିବରଣୀ ଇତିହାସ ପ୍ରସିଦ୍ଧ ।

**ଶିଶୁପାଳଗଡ଼:** ବଡ଼ଗଡ଼ ସୀମାର ଦକ୍ଷିଣ ଦିଗରେ ଶିଶୁପାଳଗଡ ଅବସ୍ଥିତ ।

ଏହି ଗଡ ଏକ ବର୍ଗାକାର ଗଡ । ଏହାର ଚତୁଃପାର୍ଶ୍ୱରେ ଗଡଖାଇ ଥିଲା ଓ ଗଡର ଚାରିକଡରେ ମାଟିର ପ୍ରାଚୀର ସହ ଚାରି କଡରେ ୪ଗୋଟି ପ୍ରବେଶ ଦ୍ୱାର ଥିଲା । ଏହି ଗଡରେ ୩ଟି ପ୍ରାଚୀନ ମନ୍ଦିର ଥିଲା । ତାହା ଉତ୍କଳେଶ୍ୱର, ଗୋକେର୍ଣ୍ଣେଶ୍ୱର ଓ ସର୍ବତେଶ୍ୱର ।

ଐତିହାସିକମାନଙ୍କର ଅନୁମାନ ଯେ, ଏଠାରେ ଯେଉଁ ଜନବସତି ଥିଲା, ତାହାର କାଳ ଖ୍ରୀ.ପୂ. ୩୦୦-୪୦୦ ବର୍ଷ ପୂର୍ବର । ଶିଶୁପାଳଗଡ କଳିଙ୍ଗ ନଗର ବର୍ଣ୍ଣନାର ବହୁ ସାଦୃଶ୍ୟ ଥିବାର ଜଣାଯାଏ । ଏହା ମେଘବାହାନଙ୍କ ବଂଶର ଚେଦୀ ରାଜା ଖାରବେଳଙ୍କ ପ୍ରସିଦ୍ଧ ଦିଗ୍‌ବିଜୟ ପରେ ଉକ୍ତ ଗଡର ମରାମତି କରିଥିଲେ ବହୁ ସ୍ୱର୍ଣ୍ଣମୁଦ୍ରା ବ୍ୟୟରେ । ଉଦୟଗିରି ନିକଟରେ ଶିଶୁପାଳଗଡ ଛଡା ଅନ୍ୟ କୌଣସି ସୁଦୃଢ ଦୁର୍ଗ ନଥିଲା । ତେଣୁ ଶିଶୁପାଳଗଡ ଖନନ ବେଳେ ଓ ଧଉଳିର ଅନୁଶାସନ ପାଠରୁ ଜଣାପଡେ, ଏହା ମୌର୍ଯ୍ୟ ଶାସନ କାଳରେ ତୋଷାଳୀ ନଗରୀ ଓ ଗଡ ଥିଲା । ଏହିଠାରୁ ତୋଷାଳୀ ରାଜ୍ୟ ଶାସିତ ହେଉଥିଲା ।

**ଧଉଳିଗିରି:** ଭୁବନେଶ୍ୱରର ଦକ୍ଷିଣ ଦିଗରେ ପ୍ରସିଦ୍ଧ ଧଉଳିଗିରି ଦୟା ନଦୀ କୂଳରେ ଅବସ୍ଥିତ । ଏହି ପାହାଡରେ ସମ୍ରାଟ୍ ଅଶୋକଙ୍କ ଅନୁଶାସନ ଦେଖାଯାଏ । ପାହାଡ ଖୋଲରେ ଏକ ମନ୍ଦିର ଅବସ୍ଥିତ । 'ରାଜାଭିଷେକର ଅଷ୍ଟମ ବର୍ଷରେ ଦେବପ୍ରିୟ ପ୍ରିୟଦର୍ଶୀ ରାଜା କଳିଙ୍ଗ ଦେଶ ଜୟ କରିଥିଲେ । କଳିଙ୍ଗ ଯୁଦ୍ଧରେ ଏକଶତ ପଚାଶ ହଜାର ଲୋକ ବନ୍ଦୀରୂପେ ସ୍ଥାନାନ୍ତରିତ ହୋଇଥିଲେ ।'

'ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ଆଦେଶରେ ତୋଷାଳୀରେ ନିଯୁକ୍ତ ମହାମାତ୍ରୀୟ ନଗର ବ୍ୟବହାକମାନଙ୍କ ଉଦ୍ଦେଶ୍ୟରେ ଲିଖିତ ହୋଇଅଛି ।'

ଐତିହାସିକ ପୀଠ ବଡଗଡ ଗ୍ରାମର ମହନୀୟତା ପ୍ରକାଶ କରିବାକୁ ଗଲାବେଳେ ଏହାର ଚତୁର୍ଦ୍ଦିଗରେ ଅବସ୍ଥିତ ଐତିହାସିକ ସ୍ଥାନ ଏବଂ ଏହା ମନ୍ଦିରମାଳିନୀ ଭୁବନେଶ୍ୱରର ଏକ ପ୍ରଧାନ ଅଂଶ ଭାବରେ ପ୍ରତିପାଦନ କରାଯାଇଛି ।

ବଡ଼ଗଡ଼, ଭୁବନେଶ୍ୱର- ୧୮



# ମାତୃଭାଷା ଆମ ପରିଚୟ

**ବୀଣାପାଣି ଚୌଧୁରୀ**

ଭାଷା ମଣିଷକୁ ପରିଚୟ ପ୍ରଦାନ କରେ । ମାତୃଭାଷା ହିଁ ଗୋଟିଏ ଜାତିର ଆତ୍ମିକ ପରିଚୟ। ଓଡ଼ିଆ ଆମର ମାତୃଭାଷା । ଶାସ୍ତ୍ରରେ ମାତୃଭୂମି ଓ ମାତୃଭାଷାକୁ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏହି ପ୍ରାଚୀନତମ ଭାଷାକୁ ନେଇ ଆମେ ବିଶ୍ୱ ଦରବାରରେ ପରିଚିତ ହୋଇଅଛୁ । ମନୁଷ୍ୟ ହିଁ କେବଳ ଭାଷାର ବ୍ୟବହାର କରେ। ଭାଷା ହିଁ ମନୁଷ୍ୟର ସମାଜ ଗଠନର ମୂଳାଧାର । ବିଶ୍ୱରେ ଯେତେ ପ୍ରକାର ଭାଷା ପ୍ରଚଳିତ ହେଉଥିଲେ ମଧ୍ୟ ମାତୃଭାଷା ହିଁ ସର୍ବୋତ୍କୃଷ୍ଟ। ମନୁଷ୍ୟର ଜ୍ଞାନ, ବିଜ୍ଞାନ, ସଂସ୍କୃତି, ଶିକ୍ଷା, ସଭ୍ୟତା ଓ ମାନବିକତାର ବିକାଶରେ ଭାଷାର ଅବଦାନ ଅତୁଳନୀୟ । ଭାଷା ହିଁ ମନୁଷ୍ୟକୁ ଏକ ବୁଦ୍ଧିମାନ୍ ଓ ଚିନ୍ତାଶୀଳ ପ୍ରାଣୀ ଭାବରେ ପରିଚିତ କରାଏ ।

ମା'ର ଭାଷା ମାତୃଭାଷା । ଏହା ଆମ ରକ୍ତରେ ପ୍ରବାହିତ ହୋଇଥାଏ । ଏହା ଆମ ପ୍ରାଣର ଭାଷା । ସମସ୍ତେ ନିଜ ନିଜ ମାତୃଭାଷାକୁ ଭଲ ପାଆନ୍ତି। ଏହା ଆମର ମୁଖ୍ୟ ଭାଷା, ଯାହାକୁ ଆମେ ପ୍ରଥମେ ଶିଖୁ ଏବଂ ପରିଚୟ ମଧ୍ୟ ପାଉ । ମାତୃଭାଷାରେ ଭାବନା ଆସେ, ସ୍ୱପ୍ନ ଦେଖାଯାଏ, ଆନନ୍ଦ ଥାଏ ଓ ପ୍ରେମ ବି ଉଦ୍ରେକ ହୋଇପାରେ । ଏହା ଭାବବିନିମୟ କାର୍ଯ୍ୟର ଏକ ସହଜ ଓ ଶକ୍ତିଶାଳୀ ମାଧ୍ୟମ । ପ୍ରକୃତରେ ମାତୃଭାଷା ଜୀବନର ଏକ ଅମୂଲ୍ୟ ସଂପଦ ।

ମାତୃଭାଷାରେ ଆବେଗ ଅଛି, କଳ୍ପନାରେ ଚମତ୍କାରିତା ଅଛି ଓ ପରିକଳ୍ପନା ମଧ୍ୟ ହୋଇପାରେ । ମା'ର କ୍ଷୀର ସଦୃଶ ଏହା ଉପାଦେୟ । ଏହା ଭାବନାକୁ ଶକ୍ତିଶାଳୀ କରେ, ଆନନ୍ଦିତ କରେ ଓ ସ୍ୱତଃପ୍ରବୃତ୍ତ ଭାବେ ଭାସି ଆସେ । ଆଶ୍ଚର୍ଯ୍ୟର କଥା ଏହି ମାତୃଭାଷା ସ୍ୱାଭାବିକ ଓ ସ୍ୱତଃପ୍ରବୃତ୍ତ ଯେ, ସାଧାରଣତଃ ଯେତେବେଳେ ଆମେ କହୁଥିବା ଭାଷାଠାରୁ ଭିନ୍ନ ଭାଷା କହୁଥିବା ସଂସ୍ପର୍ଶରେ ଆସୁ ସେତେବେଳେ ଆମକୁ ଅସ୍ୱାଭାବିକ ମନେହୁଏ । ଆମେ ଠିକ୍ ସେହି ସମୟରେ ମାତୃଭାଷା ପ୍ରତି ସଚେତନ ହୋଇଥାଉ । କାରଣ ଅନ୍ୟଭାଷା ଆମକୁ ଅଡୁଆ ଅଡୁଆ ଲାଗେ । ଆମେ ଅନ୍ୟ ଭାଷାକୁ ସହଜରେ ବୁଝିପାରି ନଥାଉ । ତେଣୁ ଅନ୍ୟଭାଷା ବ୍ୟବହାର କଲାବେଳେ ଆମକୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡେ କିନ୍ତୁ ମାତୃଭାଷାର ବ୍ୟବହାର ଯେପରି ସ୍ୱାଭାବିକ ସେହିପରି ମଧ୍ୟ ଅଭ୍ୟାସଗତ ।

ପିଲାଟି ପ୍ରଥମେ ତା' ମା'ଠାରୁ ଓ ପରିବାରକୁ ଅନୁକରଣ କରି ଅଭ୍ୟାସ ଦ୍ୱାରା ମାତୃଭାଷାର ବ୍ୟବହାର କରେ ଓ ଅନ୍ୟ ଭାଷା ସେ ଧୀରେ ଧୀରେ ବଡ ହେଲେ ସମାଜରୁ ଶିକ୍ଷାଲାଭ କରିଥାଏ । ସେହିଠାରେ ତା'ର ପରିଚୟ ମିଳିଯାଏ ସେ କେଉଁ ଜାତିର ଓ ସ୍ଥାନର । ମାତୃଭାଷା ହେଉଛି ମନୁଷ୍ୟର ଚିନ୍ତା, ଚେତନା ଓ ଅଭିଳାଷ ବିନିମୟ କରିବାର ଏକ ବିଶୁଦ୍ଧ ମାନବୀୟ ଅଭ୍ୟାସଗତ ପଦ୍ଧତି ।

ଫକୀର ମୋହନ ସେନାପତି, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର, ସ୍ୱଭାବ କବି ଗଙ୍ଗାଧର ମେହେର, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ବାମଣ୍ଡାରାଜା ସୁଢଳ ଦେବ ଆଦି ଓଡିଆ ଭାଷାକୁ ପ୍ରଚାର ଓ ପ୍ରସାର କରିଥିଲେ । ବିଶେଷ କରି ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଅବଦାନ କମ୍ ନୁହେଁ । ଏମାନଙ୍କ ଯୋଗୁଁ ଓଡିଆ ଭାଷାକୁ ନେଇ ୧୯୩୬ ମସିହା ଏପ୍ରିଲ ପହିଲା ଦିନ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେଲା । ଓଡିଆ ଭାଷା ସାହିତ୍ୟର ଅନ୍ୟ ଏକ ବିନ୍ଧାଣି ଭକ୍ତକବି ମଧୁସୂଦନ ରାଓ ଓ ଉତ୍କଳମଣି ଗୋପବନ୍ଧୁ

ଦାସ । ଓଡିଆ ଭାଷା ସାହିତ୍ୟର ବିକାଶରେ ସେମାନଙ୍କର ଭୂମିକା ଅତୁଳନୀୟ ।

ପୂର୍ବସୂରୀମାନଙ୍କ ସୃଷ୍ଟି ଓ ଅବଦାନ ଭିତ୍ତିରେ ଓଡିଆ ଭାଷା ବଞ୍ଚିରହିଛି ଏବଂ ଏହି ଭାଷା ପାଇଁ କେନ୍ଦ୍ର ସରକାରଙ୍କ ଦ୍ୱାରା ଶାସ୍ତ୍ରୀୟ ମାନ୍ୟତା ପାଇବାରେ ସଫଳ ହୋଇଛି । ଶାସ୍ତ୍ରୀୟ ମାନ୍ୟତା ପାଇଲା ପରେ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଓଡିଆ ମାତୃଭାଷା ପ୍ରତି ମମତ୍ୱବୋଧ ପ୍ରକାଶ କରିବା ସ୍ୱାଭାବିକ । ଆମ ଓଡିଆ ଭାଷାକୁ ଓଡିଶା ସରକାର ଦପ୍ତର, କାର୍ଯ୍ୟାଳୟ ତଥା ପ୍ରତିଷ୍ଠାନଗୁଡିକରେ ସରକାରୀ ଭାଷା ହେବା ପାଇଁ ନୀତି ପ୍ରଣୟନ କରିଛନ୍ତି । ଏହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ସବୁଠାରୁ ଖୁସିର କଥା, 'ଓରିଶାକୁ' 'ଓଡିଶା' ଏବଂ 'ଓରିଆକୁ' 'ଓଡିଆ'ରେ ରୂପାନ୍ତରିତ ହେବା । ଆମଭାଷା ବିଧିବଦ୍ଧ ଭାବରେ ଆଇନଗତ ସ୍ଥାନ ପାଉ ତଦ୍ୱାରା ଏ ଜାତିର ଐତିହ୍ୟ, ସଂସ୍କୃତି ଓ ସମନ୍ୱୟର ଅଭିବୃଦ୍ଧି ଘଟିବ । ଅନ୍ୟ ପକ୍ଷରେ ଅନ୍ୟ ଭାଷା ପ୍ରୀତି ମଧ୍ୟ ବୃଦ୍ଧି ପାଇଛି ।

ଏସବୁ ସତ୍ତ୍ୱେ ଲୋକମାନଙ୍କର ଦିନକୁ ଦିନ ଭାଷାପ୍ରତି ମମତା ଓ ଆନ୍ତରିକତା ଅଭାବ ପରିଲକ୍ଷିତ ହେଉଛି । ଏହା କେତେବେଳେ ମୃତବତ ହୋଇଯିବ, ବୁଦ୍ଧିଜୀବୀମାନଙ୍କୁ ଏହା ଚିନ୍ତାରେ ପକାଇଛି । ଏହାକୁ ଦୃଷ୍ଟିରେ ରଖି ୟୁନେସ୍କୋ ଫେବୃଆରୀ ୨୧ ତାରିଖକୁ ସମଗ୍ର ବିଶ୍ୱରେ ଆନ୍ତର୍ଜାତିକ ମାତୃଭାଷା ଦିବସ ରୂପେ ପାଳନ କରିଆସୁଛି । ଉଦ୍ଦେଶ୍ୟ ହେଲା ଭାରତ ପରି ବହୁଭାଷାଭାଷୀ ଦେଶରେ ପ୍ରତ୍ୟେକ ରାଜ୍ୟ ତା'ର ମାତୃଭାଷାକୁ ସମଭାବରେ ସମ୍ମାନ ଦେଲେ ରାଜ୍ୟ ରାଜ୍ୟ ମଧ୍ୟରେ ତଥା ଦେଶରେ ସ୍ନେହ, ଭାଇଚାରା ଓ ସ୍ୱଦେଶ ପ୍ରେମ ଜାଗ୍ରତ ହେବ । ଏପରି ହେଲେ ରାଜ୍ୟର ସମୃଦ୍ଧି ହେବା ସଙ୍ଗେ ସଙ୍ଗେ ସାମଗ୍ରିକ ଦେଶର ମଧ୍ୟ ଅଭିବୃଦ୍ଧି ଘଟିବ । ଏହାକୁ ସ୍ମରଣୀୟ କରିବା ପାଇଁ ଏହି ଦିନରେ ବାଂଲାଦେଶର ସ୍ୱାଧୀନତା ଦିବସକୁ ବିଶ୍ୱ ମାତୃଦିବସ ଭାବରେ ପାଳନ କାରଯାଏ ।

ଆମ ରାଜ୍ୟରେ ବିଭିନ୍ନ ଆଞ୍ଚଳିକ ଭାଷା ପ୍ରଚଳିତ ହେଉଥିଲେ ମଧ୍ୟ ଓଡିଆ ଭାଷା ସର୍ବାଧିକ ଲୋକ ବ୍ୟବହାର କରିଥାନ୍ତି । ମାତୃଭାଷାକୁ ଠିକ୍‌ରେ ପଢ଼ିବା, ଠିକ୍‌ରେ ଲେଖିବା, ଠିକ୍‌ରେ ଶିଖିବା ଓ ଠିକ୍‌ରେ କହିବା ଉଚିତ୍ ।

ଏହାଦ୍ୱାରା ମାତୃଭୂମି ଓ ମାତୃଭାଷାର ମାନ, ମହତ, ମମତା ଓ ଆନ୍ତରିକତା ବୃଦ୍ଧି ପାଇବ । ଭାଷା ବଞ୍ଚିରହେ ବ୍ୟବହାରରେ । ଆମେ ଅଧିକ ବ୍ୟବହାର କଲେ ଓଡିଆ ଭାଷାର ବିକାଶ ହୋଇପାରିବ । ଫଳରେ ଓଡିଆଜାତି ଏହାକୁ ଦିଗ୍‌ଦର୍ଶନ ମନେକରି ନୂତନ ଆତ୍ମବିଶ୍ୱାସ ପୋଷଣ କରିବ । ଅତଏବ, ମାତୃଭାଷାର ହୀନମନ୍ୟତା ଦୂର ହେବା ସଙ୍ଗେ ସଙ୍ଗେ ଆଶାର ଆଲୋକ ସମୁଜ୍ଜ୍ୱଳ ହେବ ।

କବିଙ୍କ ଭାଷାରେ-

'ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା' ।

ସୁତରାଂ ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଭାବ ମାତୃଭାଷାରୁ ହିଁ ଆମେ ପାଇଅଛୁ । ଆମ ପରିଚୟର ଭାଷା ହେଉଛି ମାତୃଭାଷା ।

ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ
ଭୁବନେଶ୍ୱର



# ଐତିହ୍ୟନଗରୀ ଭୁବନେଶ୍ୱର

ସୁଷମା ଲେଙ୍କା

ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ହେଉଛି ଏକ ଐତିହାସିକ ପୁରାଣ ପ୍ରସିଦ୍ଧ, ସାଂସ୍କୃତିକ ମନ୍ଦିରମାଳିନୀ ସହର । ଏହାର ଇତିହାସ ଓ ସଂସ୍କୃତି ଏବଂ ବୀରତ୍ୱର ଗୌରବମୟ ଐତିହ୍ୟ ଯୋଗୁଁ ଏହା ସମଗ୍ର ପୃଥିବୀରେ ଖ୍ୟାତିଲାଭ କରିଛି। କାଳର ଉତ୍‌ଥାନ ପତନ ମଧ୍ୟରେ ବିଭିନ୍ନ ଶାସନ, ଧର୍ମ ଓ ସଂସ୍କୃତିର ସମନ୍ୱୟ ଆଜି ମଧ୍ୟ ପରିଲକ୍ଷିତ ହୁଏ ଭୁବନେଶ୍ୱରର ପ୍ରତ୍ୟେକ ପଥର ଖଣ୍ଡରେ। ଖ୍ରୀ:ପୂ ସମୟରୁ ରହି ଆସିଥିବା ଭୁବନେଶ୍ୱରର ଧଉଳିଗିରି, ଖଣ୍ଡଗିରି ଶିଶୁପାଳଗଡ ଆଜି ମଧ୍ୟ ଐତିହ୍ୟନଗରୀ ଭୁବନେଶ୍ୱରର ପ୍ରାଚୀନତା ଓ ଲୋକପ୍ରିୟତାକୁ ପ୍ରମାଣିତ କରିଥାଏ।

କପିଳ ସଂହିତା, ସ୍କନ୍ଦ ପୁରାଣ ଅନୁସାରେ ମହାଦେବ ଶିବ ଏକାମ୍ର କାନନରେ ଏକ ଆମ୍ରବୃକ୍ଷ ମୂଳରେ ତ୍ରିଭୁବନେଶ୍ୱରଙ୍କର ସ୍ଫଟିକ ଲିଙ୍ଗସ୍ୱୟଂଭୂ ପୂଜା ପାଉଥିଲେ ତେଣୁ ଏହାକୁ ଏକାମ୍ର କ୍ଷେତ୍ର ବୋଲି କୁହାଯାଏ। କ୍ଷେତ୍ରେଶ୍ୱର ପ୍ରଭୁ ତ୍ରିଭୁବନେଶ୍ୱରଙ୍କ ନାମରୁ ଏହି କ୍ଷେତ୍ରର ନାମ ଭୁବନେଶ୍ୱର ହୋଇଛି ବୋଲି ସ୍କନ୍ଦ ପୁରାଣରେ ତା'ର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି। ଆଉ କେତେକଙ୍କ ମତରେ ଭୁବନେଶ୍ୱରକୁ 'ଭୁ' ଅର୍ଥାତ୍- ପୃଥିବୀ, ତାହାର ବନ ଅର୍ଥାତ୍- ଏକାମ୍ରବନ, ତାଙ୍କର ଈଶ୍ୱର ଅର୍ଥାତ କୋଟି-ଲିଙ୍ଗେଶ୍ୱର ବା ଲିଙ୍ଗରାଜ ମହାଦେବ ଯେଉଁଠାରେ ବିରାଜିତ, ତାହା ଭୁବନେଶ୍ୱର।

ଜୈନଧର୍ମର ମୂଳଭିତ୍ତି ହେଉଛି ଅହିଂସା। ଏହା ଭାରତୀୟ ସଂସ୍କୃତିର ଏକ ମୁଖ୍ୟ ଅଙ୍ଗ। ଏକ ସମୟରେ ବୌଦ୍ଧ ଓ ଜୈନ ଧର୍ମର ବହୁଳ ପ୍ରସାର ହେତୁ ଭୁବନେଶ୍ୱର ଏକ ଶାନ୍ତିପ୍ରିୟ ସହର ଭାବରେ ସର୍ବତ୍ର ପରିଚିତ ହୋଇପାରିଥିଲା। ଶ୍ରୀଜଗନ୍ନାଥ ସଂସ୍କୃତି ସହିତ ଏହି ପ୍ରାଚୀନ ବୌଦ୍ଧ ଓ ଜୈନ ସଂସ୍କୃତି ମଧ୍ୟ ଓତଃପ୍ରୋତ ଭାବେ ଜଡିତ। ସେହିଭଳି ଭୁବନେଶ୍ୱର ମଧ୍ୟ ହରି ଓ ହରଙ୍କର ସମନ୍ୱୟ କ୍ଷେତ୍ରଭଳି ବୌଦ୍ଧ ଓ ଜୈନ ଧର୍ମର ମଧ୍ୟ ଏକ ଅତ୍ୟନ୍ତ ପ୍ରାଚୀନ ସାଂସ୍କୃତିକ ସମନ୍ୱୟ କ୍ଷେତ୍ର। ଏହି ଦୃଷ୍ଟିକୋଣରୁ ଭୁବନେଶ୍ୱରକୁ ଐତିହ୍ୟ ନଗରୀ ମଧ୍ୟ କୁହାଯାଏ।

ପୁରୁଷୋତ୍ତମ ମାହାତ୍ମ୍ୟରୁ ଜଣାଯାଏ ଯେ, ବିଷ୍ଣୁ ଗୟାସୁରକୁ ବଧ କରି ନିଜର ବିଜୟ ଗୌରବ ସ୍ୱରୂପ ପୁରୀରେ ଶଙ୍ଖ, ଯାଜପୁରରେ ଗଦା, କୋଣାର୍କରେ ପଦ୍ମ, ଭୁବନେଶ୍ୱରରେ ଚକ୍ରକୁ ଅବସ୍ଥାପିତ କରିଥିଲେ, ତେଣୁ ଭୁବନେଶ୍ୱରକୁ ଚକ୍ର କ୍ଷେତ୍ର ମଧ୍ୟ କୁହାଯାଏ। ହିନ୍ଦୁ ଧର୍ମ ଅନୁସାରେ ଆମର ପଞ୍ଚ ଦେବତା ଗଣେଶ, ବିଷ୍ଣୁ, ଶିବ, ଶକ୍ତି ଓ ସୂର୍ଯ୍ୟଙ୍କର ପାଞ୍ଚଟି କ୍ଷେତ୍ର ରହିଛି। ମହାବିନାୟକ- ଗଣେଶ କ୍ଷେତ୍ର, ପୁରୀ- ବିଷ୍ଣୁକ୍ଷେତ୍ର, ଭୁବନେଶ୍ୱର- ଶିବ କ୍ଷେତ୍ର, ଯାଜପୁର- ଶକ୍ତି କ୍ଷେତ୍ର ଓ କୋଣାର୍କ- ସୂର୍ଯ୍ୟ କ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଛି। ଚକ୍ର କ୍ଷେତ୍ର ଭୁବନେଶ୍ୱର ଆୟତନ ଚକ୍ରାକାର, ଏହି କ୍ଷେତ୍ରର ପରିସୀମା ପୂର୍ବରେ କୁଣ୍ଡଳେଶ୍ୱର (ଟଙ୍କପାଣି ଗ୍ରାମ) ଠାରୁ ପଶ୍ଚିମରେ ଖଣ୍ଡାଚାଳ (ଖଣ୍ଡଗିରି) ଉତ୍ତରରେ ବଳହା ଦେବୀ (ନୂଆପଲ୍ଲୀ)ଠାରୁ ଦକ୍ଷିଣରେ ବହିରଙ୍ଗେଶ୍ୱର (ଧଉଳିଗିରି) ପର୍ଯ୍ୟନ୍ତ ବିସ୍ତୃତ ଥିଲା। ଏହି ମଣ୍ଡଳାକାର କ୍ଷେତ୍ରର ମଧ୍ୟସ୍ଥଳରେ ଏକାମ୍ରେଶ୍ୱର ଲିଙ୍ଗରାଜ ଅଧିଷ୍ଠିତ ହୋଇଛନ୍ତି। ଏହି କ୍ଷେତ୍ରର ଦୈର୍ଘ୍ୟ ତିନି ଯୋଜନ ବା ୧୨ ମାଇଲ। ଭାରତର ଦ୍ୱିତୀୟ ବାରଣାସୀ ଭାବେ ମଧ୍ୟ ଏହା ପ୍ରସିଦ୍ଧି ଲାଭ କରିଛି।

ଏକ ଐତିହାସିକ ଓ ଶାଶ୍ୱତ ପୁଣ୍ୟ କ୍ଷେତ୍ର ରୂପେ ମଧ୍ୟ ଭୁବନେଶ୍ୱରର ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱ ରହିଛି । ମନ୍ଦିର ମାଳିନୀ ଭୁବନେଶ୍ୱର ପୂର୍ବ ଦିଗରେ ପ୍ରାଚୀନ କଳିଙ୍ଗ ନଗରର ଧ୍ୱଂସାବଶେଷ ଶିଶୁପାଳ ଗଡ, ପଶ୍ଚିମରେ ଦୁଇ ହଜାର ବର୍ଷ ପୂର୍ବର ଭାସ୍କର୍ଯ୍ୟ ମଣ୍ଡିତ ଖଣ୍ଡଗିରି ଉଦୟଗିରି, ଦକ୍ଷିଣରେ ଐତିହାସିକ ଧଉଳିଗିରି ଓ ଉତ୍ତରରେ ନବନିର୍ମିତ ଆଧୁନିକ ରାଜଧାନୀ ଭୁବନେଶ୍ୱର ।

ପ୍ରାଚୀନ ସିଂହଗଡ ବା ବଡଗଡର ଭଗ୍ନପୀଠ ଉପରେ ବର୍ତ୍ତମାନର ରାଜ୍ୟ ସଂଗ୍ରହାଳୟ ନିର୍ମିତ ହୋଇଅଛି । ଏହା ରାଜାଙ୍କର ରାଜବାଟୀ ଥିଲା । ଏହି ଗଡର ପାଇକମାନେ ବୀର ଓ ପରାକ୍ରମୀ ଯୋଦ୍ଧା ଥିଲେ । ଏହାର ଦକ୍ଷିଣ ପୂର୍ବ ଦିଗରେ ଗଙ୍ଗା ଯମୁନା ନଦୀ ବା ଗନ୍ଧବତୀ (ବର୍ତ୍ତମାନ ଗଙ୍ଗୁଆ) ନଦୀର ଅପର ପାର୍ଶ୍ୱରେ 'ଶିଶୁପାଳଗଡ'ର ଧ୍ୱଂସସ୍ତୂପ ଅବସ୍ଥିତ । ସେହି ସମୟରେ 'ଶିଶୁପାଳଗଡ' କଳିଙ୍ଗନଗର ନାମରେ କଳିଙ୍ଗ ରାଜ୍ୟର ରାଜଧାନୀ ଥିଲା ।

'ଶିଶୁପାଳଗଡ'ର ଅନତି ଦୂରରେ ଦୟାନଦୀ, ଏହି ନଦୀର ଅପରପାର୍ଶ୍ୱରେ ଧଉଳିଗିରି ଅବସ୍ଥିତ । ଏଇ ଦୟା ନଦୀ କୂଳରେ ଐତିହାସିକ କଳିଙ୍ଗ ଯୁଦ୍ଧ ଅନୁଷ୍ଠିତ ହୋଇଥିଲା । ଏହି ଯୁଦ୍ଧରେ ସମ୍ରାଟ୍ ଅଶୋକ ବିଜୟଲାଭ କରିଥିଲେ ସତ କିନ୍ତୁ ଯୁଦ୍ଧର ବିଭୀଷିକାମୟ ଦୃଶ୍ୟ ଦେଖି 'ଚଣ୍ଡାଶୋକ'ରୁ 'ଧର୍ମାଶୋକ'ରେ ପରିଣତ ହୋଇଥିଲେ । ଏହି ଯୁଦ୍ଧରୁ ସମ୍ରାଟ ଅଶୋକ ଏକ ମହାନ ଶିକ୍ଷା ଲାଭ କରିଥିଲେ- ହିଂସା ପ୍ରଣୋଦିତ ତରବାରୀର ଜୟ, ଜୟ ନୁହେଁ, ମାନବ ହୃଦୟକୁ ଜୟ କରିବା ହିଁ ପ୍ରକୃତ ଜୟ । ଏହିଠାରେ ସମ୍ରାଟ୍ ଅଶୋକ ତାଙ୍କର ଅସ୍ତ୍ର ପରିତ୍ୟାଗ କରି ବୌଦ୍ଧ ଧର୍ମ ଗ୍ରହଣ କରି, ତା'ର ପ୍ରଚାର ପ୍ରସାର ଦେଶ ବିଦେଶରେ କରିଥିଲେ ।

ଧଉଳିଗିରିର ହାତୀ ଗୁମ୍ଫାରେ ଅଶୋକଙ୍କ ଅନୁଶାସନର ଶିଳାଲିପି ବ୍ରାହ୍ମୀ ଅକ୍ଷରରେ ପାଲିଭାଷାରେ ଖୋଦିତ ହୋଇଅଛି । ଶିଳାଲିପିଟି ଅଶ୍ୱତ୍‌ଥମା ପାହାଡର ଉତ୍ତର ପାର୍ଶ୍ୱରେ ଅବସ୍ଥିତ । ଶିଳାଲିପିର ଉପରକୁ ଥିବା ଶିଳାର ସମ୍ମୁଖ ଭାଗରେ ଏକ ହସ୍ତୀର ମସ୍ତକ ଖୋଦିତ ହୋଇଛି । ଏହାକୁ ଭଗବାନ ବୁଦ୍ଧଙ୍କର ପ୍ରତୀକ ରୂପେ ଆଉ କେତେକ ଗଣେଶଙ୍କ ପ୍ରତୀକ ରୂପେ ପୂଜା କରନ୍ତି ।

ଧଉଳିଗିରିର ନିମ୍ନଭାଗରେ ବହି ରଙ୍ଗେଶ୍ୱର ଶିବ ମନ୍ଦିର ଓ ଜାପାନର ନିପନ ବୁଦ୍ଧ ସଂଘ ଦ୍ୱାରା ଏକ ଶାନ୍ତି ସ୍ତୂପ ନିର୍ମାଣ କରାଯାଇଛି । ଏହାର ଦକ୍ଷିଣ ପାର୍ଶ୍ୱର ଉପର ଭାଗରେ ପୂର୍ବରୁ ଥିବା ଶିବ ମନ୍ଦିରଟି ଭାଙ୍ଗି ଯାଇଥିବାରୁ ୧୯୭୨ ମସିହାରେ ଗୋଟିଏ ଶିବ ମନ୍ଦିର ସେଠାରେ ତିଆରି କରାଯାଇଅଛି । ଏହା ପ୍ରାୟ ଖ୍ରୀ.ପୂ ତୃତୀୟ ଶତାବ୍ଦୀର ଘଟଣା । କଳିଙ୍ଗ ଯୁଦ୍ଧ ପରେ ଅଶୋକ ଧଉଳିଗିରି ପାଖରେ ନିଜର ରାଜଧାନୀ ସ୍ଥାପନ କରିଥିଲେ, ତା'ର ନାମ ଥିଲା 'ତୋଷାଳୀ' ।

ସେହିପରି ଖଣ୍ଡଗିରି ଓ ଉଦୟଗିରି ମଧ୍ୟ ଭୁବନେଶ୍ୱରର ପ୍ରାଚୀନ ଇତିହାସର ଏକ ମାଇଲଖୁଣ୍ଟ ବୋଲି ଅଭିହିତ କରାଯାଏ । ଉଦୟଗିରିର ହାତୀଗୁମ୍ଫାରେ ଖୋଦିତ ସମ୍ରାଟ୍ ଖାରବେଳଙ୍କର ଅନୁଶାସନ ପ୍ରାୟ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଇତିହାସ । ସମ୍ରାଟ ଅଶୋକଙ୍କ ପରି, ସମ୍ରାଟ ଖାରବେଳ ମଧ୍ୟ ଖଣ୍ଡଗିରି ଶିଖରରୁ ଜୈନଧର୍ମ ପ୍ରଚାର କରି, ଶାସନ ନୀତି ପ୍ରଣୟନ କରିଥିଲେ ।

ସମ୍ରାଟ୍ ଖାରବେଳ ବହୁ ରାଜ୍ୟ ଜୟ କରିବା ସହିତ ଧର୍ମ ଓ ସଂସ୍କୃତିର ବିକାଶ ନିମନ୍ତେ ନିଜକୁ ନିୟୋଜିତ କରିଥିଲେ । ସେତେବେଳେ ଖଣ୍ଡଗିରି (ପୁରାତନ ନାମ କୁମାରୀ ପାହାଡ଼) ଜୈନଧର୍ମର କେନ୍ଦ୍ରସ୍ଥଳୀ ଥିଲା । ଖଣ୍ଡଗିରି ପାହାଡ଼ର ଉଚ୍ଚତା ଖଣ୍ଡଗିରି ଓ ଉଦୟଗିରି ପାହାଡ଼ରେ ସମ୍ରାଟ୍ ଖାରବେଳ ଜୈନ ସନ୍ନ୍ୟାସୀମାନଙ୍କ ପାଇଁ ଅନେକ ଗୁମ୍ଫା ଖୋଳାଇଥିଲେ । ସେଥିମଧ୍ୟରୁ ଉଦୟଗିରିର ଦ୍ୱିତଳ ବିଶିଷ୍ଟ ରାଣୀ ହଂସପୁର ଗୁମ୍ଫା ଭାରତ ବିଖ୍ୟାତ । ଏହା ବ୍ୟତୀତ ମଞ୍ଚପୁରୀ, ସ୍ୱର୍ଗପୁରୀ, ଗଣେଶ ଗୁମ୍ଫା ଅତ୍ୟନ୍ତ ମନୋରମ । ଖଣ୍ଡଗିରିର ଶୀର୍ଷଭାଗରେ ପୂର୍ଣ୍ଣାବୟବ ଜୈନମୂର୍ତ୍ତି ଥିବା ଏକ ଜୈନମନ୍ଦିର ଅଛି ।

ଏଇ ଏକାମ୍ର କ୍ଷେତ୍ର ଥିଲା ସମ୍ରାଟ୍ ଖାରବେଳଙ୍କର ରାଜଧାନୀ, ଇତିହାସ ପ୍ରସିଦ୍ଧ 'କଳିଙ୍ଗ ନଗର' । ମାଘମାସ ଶୁକ୍ଳପକ୍ଷ ସପ୍ତମୀ ତିଥିରେ ଏଠାରେ ଖଣ୍ଡଗିରି ମେଳା ଅନୁଷ୍ଠିତ ହୁଏ । ଏଠାରେ ବିଭିନ୍ନ ପ୍ରକାରର ଦୋକାନ ବଜାର ସହିତ ବିଭିନ୍ନ ଅପେରାଦଳ ନାଟକ ପରିବେଷଣ କରିଥାନ୍ତି ।

ସମ୍ରାଟ୍ ଖାରବେଳଙ୍କ ପରେ ସାତକର୍ଣ୍ଣି-୨ୟ ଓ ସାତବାହାନ ବଂଶଧରମାନେ ଖ୍ରୀ.ପୂ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ

ଭୁବନେଶ୍ୱରରେ ରାଜତ୍ୱ କରିଥିଲେ। ଏହାପରେ କୁଶାଣ ଓ ଗୁପ୍ତ ବଂଶର ରାଜାମାନେ କିଛିକାଳ ପର୍ଯ୍ୟନ୍ତ ରାଜତ୍ୱ କରିବା ପରେ ପୁଣି ହିନ୍ଦୁ ରାଜାମାନେ ରାଜତ୍ୱ କରିଥିଲେ। ଏହି ସମୟରେ ତ୍ରିଭୁବନେଶ୍ୱରଙ୍କର ପ୍ରଥମ ଶିବ ମନ୍ଦିର ନିର୍ମିତ ହୋଇଥିଲା। ଖ୍ରୀ.ପୂ ପଞ୍ଚମ ଶତାବ୍ଦୀରେ ଶୈବ ଧର୍ମର ଅଭ୍ୟୁଦୟ ଘଟିବା ସଙ୍ଗେ ସଙ୍ଗେ ବୌଦ୍ଧ ଓ ଜୈନ ଧର୍ମର ପତନ ଘଟିଥିଲା।

ଏକାମ୍ର ପୁରାଣରୁ ଜଣାଯାଏ ଯେ, ଷଷ୍ଠ ଶତାବ୍ଦୀରେ ଗୌଡ ଦେଶର ରାଜା ଶଶାଙ୍କ ପ୍ରଥମେ ଏକାମ୍ର କ୍ଷେତ୍ରରେ ସ୍ୱୟଂଭୁ ଲିଙ୍ଗ ତ୍ରିଭୁବନେଶ୍ୱରଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରାଇଥିଲେ। ସେତେବେଳେ ଏଇ ଲିଙ୍ଗ 'କୃତିବାସ' ନାମରେ ପୂଜା ପାଉଥିଲେ। ପ୍ରଭୁ ଲିଙ୍ଗରାଜ କୀର୍ତ୍ତି ଓ ବାସ ନାମକ ଦୁଇ ଅସୁରଙ୍କୁ ବଧ କରିଥିବାରୁ, ତାଙ୍କୁ 'କୃତିବାସ' ନାମରେ ପୂଜା କରୁଥିଲେ। ବର୍ତ୍ତମାନ ସେହି ମନ୍ଦିରର ସ୍ଥିତି ନାହିଁ। ଏହିଠାରେ ସତ୍ୟ ଓ ତ୍ରେତା ଯୁଗରେ ମହାଦେବ ଅଦୃଶ୍ୟ ଭାବରେ ରହି, କଳିଯୁଗରେ ଆବିର୍ଭାବ ହୋଇଥିଲେ ବୋଲି ପୁରାଣରୁ ଜଣାଯାଏ।

ସପ୍ତମ ଶତାବ୍ଦୀର ମଧ୍ୟାହ୍ନ କାଳରେ ଗଞ୍ଜାମର ଶୈଳୋଦ୍ଭବ ରାଜବଂଶ ଭୁବନେଶ୍ୱରରେ ରାଜତ୍ୱ କଲେ। ସେହି ସମୟରେ ପର୍ଶୁରାମେଶ୍ୱର ଓ ନକୁଳେଶ୍ୱର ପ୍ରଭୃତି ମନ୍ଦିର ସମୂହ ନିର୍ମିତ ହୋଇଥିଲା। ତା'ପରେ ଭୌମକର ରାଜାମାନେ ପ୍ରାୟ ଏକଶତ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। ଏହି ସମୟରେ ବୈତାଳଶ୍ୱର ଓ ଶିଶିରେଶ୍ୱର ଆଦି ମନ୍ଦିରଗୁଡିକ ନିର୍ମିତ ହୋଇଥିଲା। ଏହି ସମୟରେ ଶୈବ ଧର୍ମ ସହିତ ତନ୍ତ୍ର ଧର୍ମର ମିଶ୍ରଣରେ ଏକ ସ୍ୱତନ୍ତ୍ର ଶାକ୍ତ ଧର୍ମର ଅଭ୍ୟୁଦୟ ଘଟିଥିଲା।

ତା'ପରେ ସୋମବଂଶୀ ବା କେଶରୀ ବଂଶର ରାଜାମାନେ ଭୁବନେଶ୍ୱରରେ ରାଜତ୍ୱ କଲେ। ଏମାନଙ୍କ ସମୟରେ ରାଜ୍ୟର ସୀମା ବିସ୍ତାର ଲାଭ କରିଥିଲା। ସେମାନେ ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ସମେତ ଅନେକ ଶିବ ମନ୍ଦିର ନିର୍ମାଣ କରିଥିଲେ। କେଶରୀ ବଂଶର ରାଜା ପ୍ରଥମ ଯଯାତି, ମୁକ୍ତେଶ୍ୱର ମନ୍ଦିର ଓ ରାଜା ଇନ୍ଦ୍ରରଥ ଇନ୍ଦ୍ରେଶ୍ୱର ମନ୍ଦିର (ବର୍ତ୍ତମାନର ରାଜାରାଣୀ ମନ୍ଦିର) ନିର୍ମାଣ କରିଥିଲେ। ମୁକ୍ତେଶ୍ୱର ମନ୍ଦିର ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରେ ମନୋରମ ପରିବେଶ ଓ ଚମତ୍କାର ସୂକ୍ଷ୍ମ କାରୁକାର୍ଯ୍ୟ ଖୋଦନ କଳା ପାଇଁ ପ୍ରସିଦ୍ଧ । ଏହାକୁ ଦେଖି ଫର୍ଗୁସନ୍ ସାହେବ ଓଡ଼ିଶାର ଶିଳ୍ପ ରନ୍ ବୋଲି ଏହାକୁ ବର୍ଣ୍ଣନା କରିଛନ୍ତି। ମନ୍ଦିରର ଚତୁର୍ଦ୍ଦିଗରେ ପଥର ପାଚେରୀ ଓ ପଛ ପାର୍ଶ୍ୱରେ ବେଢା ବାହାରେ ଏକ ବଡ ଜଳକୁଣ୍ଡ ଅଛି। ଏହି କୁଣ୍ଡ ମଧ୍ୟରେ ଏକ ଚିରସ୍ରୋତା ଝରଣା ପ୍ରବାହିତ ହେଉଛି। ବେଢାର ଦକ୍ଷିଣ ପାର୍ଶ୍ୱରେ ମରିଚିକୁଣ୍ଡ ରହିଛି। ଅଶୋକାଷ୍ଟମୀ ଦିନ ଏହି କୁଣ୍ଡର ଜଳ ନିଲାମ କରାଯାଏ। ରାଜାରାଣୀ ମନ୍ଦିରର ସ୍ଥାପତ୍ୟକଳା ଅତ୍ୟନ୍ତ ଚିତ୍ତାକର୍ଷକ। ଭୁବନେଶ୍ୱର ମନ୍ଦିରମାନଙ୍କ ମଧ୍ୟରେ ଲିଙ୍ଗରାଜ ମନ୍ଦିର ସର୍ବଶ୍ରେଷ୍ଠ । ଏହାକୁ ତ୍ରିଭୁବନେଶ୍ୱର, ଏକାମ୍ରେଶ୍ୱର ଓ କୃତ୍ତିବାସ ବୋଲି ମଧ୍ୟ କୁହାଯାଏ। ଲିଙ୍ଗରାଜ ମନ୍ଦିରରେ ଯେଉଁ ଲିଙ୍ଗ ପୂଜା ପାଏ, ତାହା ଏକ ପ୍ରାକୃତିକ ରେଖାଦ୍ୱାରା ଦୁଇ ଭାଗରେ ବିଭକ୍ତ। ସେହି ବିଭାଜିତ ଦୁଇ ଅଂଶକୁ ଶିବ ଓ ବିଷ୍ଣୁଙ୍କର ମିଳିତ ପ୍ରତୀକ ରୂପେ ପୂଜା କରାଯାଏ। ତେଣୁ ଲିଙ୍ଗରାଜ ହରିହର ରୂପେ ପୂଜା ପାଇ ଥାଆନ୍ତି। ହରିହର ରୂପେ ଲିଙ୍ଗରାଜଙ୍କୁ ଉଭୟ ତୁଳସୀ ଓ ବେଲପତ୍ର ଦ୍ୱାରା ପୂଜା କରାଯାଏ। ମନ୍ଦିରର ଶିଖର ଉପରେ ବିଷ୍ଣୁ ଓ ଶିବଙ୍କର ଆୟୁଧ ଉଭୟ ଚକ୍ର ଓ ତ୍ରିଶୂଳର ପ୍ରତୀକ ସ୍ୱରୂପ ପିନାକ ଧନୁ ରହିଛି। ମନ୍ଦିର ପ୍ରାଙ୍ଗଣରେ ଅନ୍ୟାନ୍ୟ ପ୍ରାୟ ୭୦ଟି ମନ୍ଦିର ରହିଛି। ମନ୍ଦିରରେ କୋରାଖଇ, ନଡ଼ିଆ, କଦଳୀ ଭୋଗ ହୋଇଥାଏ।

ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ, ଲିଙ୍ଗରାଜଙ୍କର ଅଶୋକାଷ୍ଟମୀ ଦିନ ପ୍ରସିଦ୍ଧ ରଥଯାତ୍ରା ଅନୁଷ୍ଠିତ ହୁଏ । ଏଇ ରଥର ନାମ 'ରୁକୁଣା ରଥ'। ପୁରାଣ ଅନୁଯାୟୀ ରାମଚନ୍ଦ୍ର ଲଙ୍କାରେ ରାଜା ରାବଣକୁ ମାରି ଅଯୋଧ୍ୟାକୁ ଫେରିଆସି ରାଜ ସିଂହାସନରେ ଅଭିଷିକ୍ତ ହେଲେ। ଏହି ସମୟରେ ସେ ପାପର ପ୍ରଭାବ ଉପଲବ୍ଧି କରି ପାପମୁକ୍ତି ନିମନ୍ତେ ରାଜଗୁରୁ ବଶିଷ୍ଠଙ୍କର ପରାମର୍ଶ ଲୋଡିଲେ। ବଶିଷ୍ଠଙ୍କର ଉପଦେଶ ଅନୁଯାୟୀ ରାମଚନ୍ଦ୍ର ଶିବଙ୍କୁ ପୂଜା କଲେ। ଶିବ, ରାମଚନ୍ଦ୍ରଙ୍କର ପରମ ଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ବର ପ୍ରଦାନ କରିବା ପାଇଁ, ଏହି ଦିନ ରଥରେ ନିଜ ମନ୍ଦିରରୁ ଶିବ, ଭୁବନେଶ୍ୱରୀ ଦେବୀଙ୍କ ସହିତ ରାମେଶ୍ୱର ମନ୍ଦିରକୁ ଆସି ରାମଚନ୍ଦ୍ରଙ୍କୁ ବର ପ୍ରଦାନ କରିଥିଲେ।

କେଶରୀ ବଂଶ ପରେ, ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଗଙ୍ଗବଂଶ ରାଜାମାନେ ରାଜତ୍ୱ କଲେ । ଏହି ଗଙ୍ଗବଂଶର ରାଜା ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିର ଓ ଅନ୍ୟ କେତେକ ମନ୍ଦିର ନିର୍ମାଣ କରିଥିଲେ । ଲିଙ୍ଗରାଜ ମନ୍ଦିରର ଏକ ଶିଳାଲିପିରୁ ଜଣାଯାଏ ଯେ, ରାଜା ଅନନ୍ତ ବର୍ତ୍ତମାନ ଚୋଳଗଙ୍ଗ ଦେବ ଲିଙ୍ଗରାଜଙ୍କୁ ଏକ ଦୀପ ଦାନ କରିଥିଲେ ।

**ବିନ୍ଦୁ ସାଗର:** ପୁରାଣରୁ ଜଣାଯାଏ ଯେ ସକଳ ତୀର୍ଥର ବିନ୍ଦୁ ବିନ୍ଦୁଜଳର ସମଷ୍ଟିରେ ଏହି ବିନ୍ଦୁ ସାଗରର ସୃଷ୍ଟି । ପୁଷ୍କରିଣୀର ମଧ୍ୟସ୍ଥଳରେ ଏକ ମଣ୍ଡପ ଅଛି । ଏହି ମଣ୍ଡପର ଉତ୍ତର ପୂର୍ବ କୋଣରେ ଏକ କ୍ଷୁଦ୍ର ମନ୍ଦିର ଅଛି । ବିନ୍ଦୁ ସାଗରରେ ଲିଙ୍ଗରାଜଙ୍କର ଚନ୍ଦନଯାତ୍ରା ଓ କାର୍ତ୍ତିକ ପୂର୍ଣ୍ଣମୀରେ ଡଙ୍ଗା ଭସା ହୁଏ ।

ବିନ୍ଦୁସାଗରର ତିନୋଟି ଘାଟ ଅଛି । ପୂର୍ବରେ ବ୍ରହ୍ମାଘାଟ, ଦକ୍ଷିଣରେ ମଣିକର୍ଣ୍ଣିକା ଘାଟ ଓ ଉତ୍ତରରେ ଗୋଦାବରୀ ଘାଟ, ପଶ୍ଚିମ ପାର୍ଶ୍ୱରେ ଏକ ସୁନ୍ଦର ପୁଷ୍ପ ଓ ଔଷଧୀୟ ଗଛଲତା ଥିବା ଉଦ୍ୟାନ ଅଛି । ପୂର୍ବ ଦିଗରେ ଦ୍ୱାରବାସିନୀ, ଅନନ୍ତ ବାସୁଦେବ ଓ ବ୍ରହ୍ମା ମନ୍ଦିର, ଦକ୍ଷିଣରେ ଭବାନୀ ଶଙ୍କର, ମୋହିନୀ ଓ ଶଙ୍କରାଣୀ ମନ୍ଦିର, ପଶ୍ଚିମରେ ପଶ୍ଚିମେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିର, ଉତ୍ତରରେ ଉତ୍ତରେଶ୍ୱର ମନ୍ଦିର ଅବସ୍ଥିତ ।

**ଅନନ୍ତ ବାସୁଦେବ ମନ୍ଦିର–** ଏହି ବିଷ୍ଣୁ ମନ୍ଦିର ରାଜା ଅନଙ୍ଗ ଭୀମଦେବଙ୍କ କନ୍ୟା ତଥା ଲାଙ୍ଗୁଳା ନରସିଂହ ଦେବଙ୍କ ଭଉଣୀ ଚନ୍ଦ୍ରିକା ଦେବୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏକ କିମ୍ବଦନ୍ତୀରୁ ଜଣାଯାଏ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଏହି ଅନନ୍ତ ବାସୁଦେବଙ୍କ ମୂର୍ତ୍ତି ଇନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଥିଲା । ଏଠାରେ ମହାପ୍ରସାଦ (ଅବଢ଼ା) ଭୋଗ କରାଯାଏ । ପ୍ରତିଦିନ ଲୋକମାନେ ମହାପ୍ରସାଦ ଖାଇବାକୁ ସେଠାକୁ ଯାଇଥାନ୍ତି । ଏହି ମନ୍ଦିର ବିନ୍ଦୁସାଗରର ପୂର୍ବ ଦିଗରେ ଅବସ୍ଥିତ । ତା'ଛଡା ଭୁବନେଶ୍ୱରରେ ଅନେକ ପ୍ରସିଦ୍ଧ ମନ୍ଦିର ଅବସ୍ଥିତ । ସେଗୁଡିକ ହେଲା– ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ଶତ୍ରୁଘ୍ନେଶ୍ୱର (ସବୁଠାରୁ ପୁରାତନ ମନ୍ଦିର), ରାମେଶ୍ୱର ମନ୍ଦିର (ମାଉସୀମା ମନ୍ଦିର), ପର୍ଶୁରାମେଶ୍ୱର ମନ୍ଦିର, ସ୍ୱର୍ଣ୍ଣ ଜଳେଶ୍ୱର ମନ୍ଦିର, କୋଟି ତୀର୍ଥେଶ୍ୱର ମନ୍ଦିର, ଭାସ୍କରେଶ୍ୱର ମନ୍ଦିର, ମେଘେଶ୍ୱର ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର, ବୋଇତାଳ ମନ୍ଦିର ଦେବୀ ପାଦହରା ପୁଷ୍କରିଣୀ (ସହସ୍ରଲିଙ୍ଗ ପୁଷ୍କରିଣୀ) ଲିଙ୍ଗରାଜ ମନ୍ଦିରର ପୂର୍ବ ଦିଗରେ ଗୋସାଗରେଶ୍ୱର ମନ୍ଦିର ଓ କପିଳେଶ୍ୱର ମନ୍ଦିର । କପିଳେଶ୍ୱର ମନ୍ଦିର ପ୍ରାଚୀନ ଭୁବନେଶ୍ୱରର ଶେଷ ସ୍ଥାପତ୍ୟ କଳାର ମନ୍ଦିର । କପିଳେଶ୍ୱର, ଲିଙ୍ଗରାଜଙ୍କର ଭଣ୍ଡାର ରକ୍ଷକ ବୋଲି ଲୋକମୁଖରୁ ଜଣାଯାଏ ।

**ଭୁବନେଶ୍ୱରର ଶିଶୁପାଳଗଡ–** ସମ୍ରାଟ୍ ଖାରବେଳଙ୍କର ରାଜଧାନୀ ଥିଲା । ସେତେବେଳେ ତା'ର ନାମ ଥିଲା କଳିଙ୍ଗନଗର । ଶିଶୁପାଳ କେଶରୀ ରାଜାଙ୍କର ଏହା ମଧ୍ୟ ରାଜଧାନୀ ଥିଲା । ଗୃହଗୁଡିକର ନିର୍ମାଣ ଶୈଳୀ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା ବୋଲି ଜଣାଯାଏ ।

ଐତିହାସିକମାନଙ୍କ ମତରେ ଓଡ଼ିଶାର ମନ୍ଦିର ନିର୍ମାଣ କାର୍ଯ୍ୟ ପ୍ରଥମେ ଭୁବନେଶ୍ୱରରେ ଆରମ୍ଭ ହୋଇଥିଲା । ଖ୍ରୀଷ୍ଟିୟ ଷଷ୍ଠ ଶତାବ୍ଦୀରୁ ଖ୍ରୀଷ୍ଟୀୟ ୧୫୦୦ ପର୍ଯ୍ୟନ୍ତ ପ୍ରାୟ ହଜାରେ ବର୍ଷରେ ଗଢି ଉଠିଛି ବିଭିନ୍ନ ପ୍ରକାରର ଓ ବିଭିନ୍ନ ଆକାରର ଦଶ ସହସ୍ର ମନ୍ଦିର । ଏହି ମନ୍ଦିରଗୁଡିକ ସ୍ୱତନ୍ତ୍ର ଭାବେ କଳିଙ୍ଗ ମନ୍ଦିର ସ୍ଥାପତ୍ୟ ଶୈଳୀ ଭାବରେ ଭାରତର ଅନୁସୃତ ଅନ୍ୟ ତିନୋଟି ଶୈଳୀ ଯଥା– ନାଗର ଦ୍ରାବିଡ, କେଶରଠାରୁ ଭିନ୍ନ ପରିଚୟ ସୃଷ୍ଟି କରିଥାଏ । କଳିଙ୍ଗ ସ୍ଥାପତ୍ୟର ଏ ଅଭୂତପୂର୍ବ ବିକାଶ ପଥରେ ଗଢି ଉଠିଛି ଅସଂଖ୍ୟ ରେଖ, ପିଢ଼ି ଓ ଖାକରା ଶୈଳୀର ତ୍ରିରଥ, ପଞ୍ଚରଥ, ସପ୍ତରଥ ଓ ନବରଥ ବିଶିଷ୍ଟ ମନ୍ଦିର ସମୂହ, ଯାହା ଉତ୍କଳୀୟ ଶିଳ୍ପ ନୈପୁଣ୍ୟର ପରିଚୟ ଦେଇଥାଏ । ପୃଥିବୀର କୌଣସି ସହରରେ ଭୁବନେଶ୍ୱର ପରି ଗୋଟିଏ ସ୍ଥାନରେ ବିଭିନ୍ନ ଶିଳ୍ପ ସ୍ଥାପତ୍ୟର ଭିନ୍ନ ଭିନ୍ନ ଧରଣର ମନ୍ଦିର ଏତେ ସଂଖ୍ୟାରେ ପାଖାପାଖି ଥିବାର ଦେଖାଯାଏ ନାହିଁ ।

ଯେଉଁ ମନ୍ଦିରଗୁଡିକରେ ମୁଖଶାଳା, ନାଟମନ୍ଦିର ଓ ଭୋଗ ମଣ୍ଡପ ରହିଛି, ତାହା ଅନ୍ୟାନ୍ୟ ମନ୍ଦିରମାନଙ୍କଠାରୁ ଗଠନ ପ୍ରଣାଳୀରେ ଭିନ୍ନ ଥିବା ଜଣାଯାଏ । ଅବଶ୍ୟ ଲିଙ୍ଗରାଜ ମନ୍ଦିର, ପାର୍ବତୀ ମନ୍ଦିର ଓ ଅନନ୍ତ ବାସୁଦେବ ମନ୍ଦିର, ରାଜାରାଣୀ ଓ ମୁକ୍ତେଶ୍ୱର ମନ୍ଦିରରେ ଏକ ହଜାର ବର୍ଷ ଧରି ଅନେକ ସୂକ୍ଷ୍ମ ସ୍ଥାପତ୍ୟ କଳା ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି ।

ପଥର ଦେହରେ ଖୋଦିତ ଦୃଶ୍ୟାବଳୀ ମଧ୍ୟରେ ସୈନ୍ୟବାହିନୀଙ୍କର ଯାତ୍ରା ଓ ରଣକୌଶଳ- ରାଜାରାଣୀ, ରାଜଦରବାର, ବିଭିନ୍ନ ବେଶ ପୋଷକରେ ବିଭୂଷିତା ଓ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରୁଥିବା ସୁଗଠିତ ନାରୀ ଓ ନର୍ତ୍ତକୀ ମୂର୍ତ୍ତି, ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତି ଅତ୍ୟନ୍ତ ଆକର୍ଷଣୀୟ ଓ ମନୋମୁଗ୍ଧକର। ବିଭିନ୍ନ ଜୀବଜନ୍ତୁ, ପଶୁପକ୍ଷୀ ଗଛଲତାମାନଙ୍କର ସୂକ୍ଷ୍ମାତି ସୂକ୍ଷ୍ମ ଚିତ୍ରକଳା ବାସ୍ତବରେ ବିସ୍ମୟକର ମନେହୁଏ। ଭୁବନେଶ୍ୱରର ମନ୍ଦିରର ଶିଳ୍ପକଳା ଆଧୁନିକ ଓଡ଼ିଶାର ସମସ୍ତ ଶିଳ୍ପକଳା ମଧ୍ୟରେ ଉତ୍କୃଷ୍ଟ ବୋଲି ବିବେଚିତ ହୁଏ।

**ନନ୍ଦନକାନନ:** ଭୁବନେଶ୍ୱର ଉପକଣ୍ଠରେ ଚନ୍ଦକା ଜଙ୍ଗଲର ପ୍ରାକୃତିକ ପରିବେଶ ମଧ୍ୟରେ ଏହା ଅବସ୍ଥିତ। ପ୍ରାୟ ୪୦୦ ହେକ୍ଟର ଜମି ଉପରେ ଏହା ଅବସ୍ଥିତ। ଲୁପ୍ତ ପ୍ରାୟ ବିରଳ ଅଥଚ ଭୟଙ୍କର ଜୀବଜନ୍ତୁମାନଙ୍କୁ ଖୁବ୍ ନିକଟରୁ ଦେଖିବାର ମଜା, ନିଆରା ଅନୁଭୂତି ଆଣିଦିଏ। ବିଭିନ୍ନ ପ୍ରଜାତିର ପଶୁପକ୍ଷୀ ସାଙ୍ଗକୁ ସରୀସୃପ, ସ୍ତନ୍ୟପାୟୀ ପ୍ରାଣୀ ଓ ବିରଳ ପ୍ରଜାତିର ଉଦ୍ଭିଦମାନ ମନକୁ କରେ ପୁଲକିତ। ଉଦ୍ୟାନ ପରିସରସ୍ଥ କାଞ୍ଜିଆ ହ୍ରଦରେ ସ୍ୱୟଂ ବୋଟିଙ୍ଗ କରିବାର ମଜା, ସତରେ ଗୋଟିଏ ନିଆରା ଅନୁଭୂତି ଆଣିଦିଏ।

ଭୁବନେଶ୍ୱରର ଦୁଇପାର୍ଶ୍ୱରେ ଦୁଇଟି ନଦୀ, କୁଆଖାଇ ଓ ଦୟା ନଦୀ ବହିଯାଉଛି। ଏହି ନଦୀରୁ ସହରବାସୀଙ୍କୁ ପାନୀୟ ଜଳ ଯୋଗାଣ କରାଯାଉଛି। ଚିର ସବୁଜ ଅରଣ୍ୟ, ସୁନ୍ଦର ଗିରିରାଜି, ଚନ୍ଦକା-ଡମପଡ଼ା ଜଙ୍ଗଲ, ଭରତପୁର ସଂରକ୍ଷଣ ଜଙ୍ଗଲର ପକ୍ଷୀ ନିବାସସ୍ଥଳ, ଡେରାସ, ଝୁମୁକା ଡ୍ୟାମ୍ ଏବଂ ବିଭିନ୍ନ ସବୁଜ ପରିବେଶ ଏ ସହରକୁ ସୁନ୍ଦର ଓ ଆକର୍ଷଣୀୟ କରିପାରିଛି।

ଭୁବନେଶ୍ୱର ହେଉଛି ଏକ କଳା, ସ୍ଥାପତ୍ୟ, ସୌନ୍ଦର୍ଯ୍ୟ ସଂସ୍କୃତି ଓ ଐତିହ୍ୟର ମହାନଗରୀ। ଏଠାରେ ଅନେକ ଜାତୀୟ ଓ ଅନ୍ତର୍ଜାତୀୟ ମେଳା ଓ ମହୋତ୍ସବ ଅନୁଷ୍ଠିତ ହୋଇଥାଏ । ରାଜାରାଣୀ ସଂଗୀତ ମହୋତ୍ସବ, ଖାରବେଳ ମହୋତ୍ସବ, ତୋଷାଳି ମହୋତ୍ସବ, ଧଉଳି-କଳିଙ୍ଗ ମହୋତ୍ସବ, ମୁକ୍ତେଶ୍ୱର ନୃତ୍ୟ ମହୋତ୍ସବ ଏମିତି ଅନେକଗୁଡ଼ିଏ ମହୋତ୍ସବ ମଧ୍ୟ ଏଠାରେ ଅନୁଷ୍ଠିତ ହେଉଅଛି ।

ଏକଦା ଶିଶୁପାଳଗଡ, ଏକାମ୍ରକ୍ଷେତ୍ର, ତୋଷାଳି, ଧଉଳିଗିରି, ଖଣ୍ଡଗିରି ନାମରେ ବିଶ୍ୱ ବିଖ୍ୟାତ ଐତିହ୍ୟ ନଗରୀ ଆଜି ଆଧୁନିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ରମ୍ୟ ରାଜଧାନୀ ଭାବରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଛି।

ବିଭିନ୍ନ ମନ୍ଦିର ବ୍ୟତୀତ ଭୁବନେଶ୍ୱରର ଅନ୍ୟ ଯେଉଁ ଐତିହାସିକ ତଥ୍ୟମାନ ବିଶ୍ୱ ପର୍ଯ୍ୟଟକମାନଙ୍କ ଦୃଷ୍ଟି ଆକର୍ଷଣ କରିଥାଏ, ସେଗୁଡ଼ିକ ହେଲା- ଆଞ୍ଚଳିକ ପ୍ରାକୃତିକ ଇତିହାସ ସଂଗ୍ରହାଳୟ, ରାଜ୍ୟ ହସ୍ତଶିଳ୍ପ ସଂଗ୍ରହାଳୟ, ପଠାଣିସାମନ୍ତ ପ୍ଲାନେଟୋରିୟମ, ଏକାମ୍ର ହାଟ, ବିଜୁ ପଟ୍ଟନାୟକ ଅନ୍ତର୍ଜାତୀୟ ବିମାନ ବନ୍ଦର, କଳିଙ୍ଗ ଷ୍ଟାଡ଼ିୟମ। ବିଶେଷକରି ଭୁବନେଶ୍ୱର ପ୍ରତିଷ୍ଠିତ ଅଗ୍ରଣୀ ଶିକ୍ଷାକେନ୍ଦ୍ର ଭାବରେ ବିଶ୍ୱରେ ଦୃଷ୍ଟି ଆକର୍ଷଣ କରିପାରିଛି । ସେଗୁଡ଼ିକ ହେଲା- ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଜାଭିୟର ବିଶ୍ୱବିଦ୍ୟାଳୟ, ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ, ଶ୍ରୀ ଶ୍ରୀ ରବିଶଙ୍କର ବିଶ୍ୱବିଦ୍ୟାଳୟ, ଆଇଆଇଟି, ଟ୍ରିପଲ ଆଇଟି, ନାଇଜର, ନିଫ୍ଟ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ, ଶିକ୍ଷା ଓ ଅନୁସନ୍ଧାନ ବିଶ୍ୱବିଦ୍ୟାଳୟ, କିଟ୍ ଓ କିସ୍ ବିଶ୍ୱବିଦ୍ୟାଳୟ। ଏହା ବ୍ୟତୀତ ଭୁବନେଶ୍ୱର ସ୍ମାର୍ଟସିଟିର ମାନ୍ୟତା ପାଇଛି। ଏଠାରେ କ୍ୟାପିଟାଲ ହସ୍ପିଟାଲ, ଆପୋଲୋ, କଳିଙ୍ଗ, ଆଦିତ୍ୟ କେୟାର, ଏମ୍ସ, ସମ୍ ଓ କିମ୍ସ ହସ୍ପିଟାଲ ଭଳି ଉଚ୍ଚମାନର ହସ୍ପିଟାଲ ଅଛି।

କ୍ରୀଡା କ୍ଷେତ୍ରରେ ମଧ୍ୟ ଭୁବନେଶ୍ୱର ଏକ ଗୁରୁତ୍ୱପୂର୍ଣ୍ଣ ସହର ହୋଇ ବିଶ୍ୱ ଦରବାରରେ ନିଜର ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଛି। ଯଥା ଏସିୟାନ ଆଥଲେଟିକ୍ସ ଗେମ୍ସ ଓ ବିଶ୍ୱକପ୍ ପୁରୁଷ ହକି ଖେଳ ମହା ସମାରୋହରେ ଅନୁଷ୍ଠିତ ହୋଇପାରିଛି ।

### କଟକରୁ ଭୁବନେଶ୍ୱରକୁ ରାଜଧାନୀ ସ୍ଥାନାନ୍ତରିତ

୧୯୩୬ ମସିହା ଅପ୍ରେଲ ଏକ ତାରିଖ ଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ସ୍ୱୀକୃତି ଲାଭ କଲା। ଓଡ଼ିଶା ପ୍ରଦେଶ ଗଠନ ହେବା ପରେ, ଓଡ଼ିଶାର ରାଜଧାନୀ 'କଟକ' ଠାରେ ସ୍ଥାପନ କରାଗଲା। ବ୍ରିଟିଶମାନଙ୍କ ଶାସନ କାଳରେ କଟକର ଭିତ୍ତିଭୂମି, ଶିକ୍ଷାବାଣିଜ୍ୟ ସ୍ୱାସ୍ଥ୍ୟ, ଆଇନ, ପ୍ରଶାସନ,

ଯୋଗାଯୋଗ ଇତ୍ୟାଦି ପ୍ରସଙ୍ଗରେ ପ୍ରଭୁତ ଉନ୍ନତି ହୋଇଥିଲା । ପରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ କରିବା ପାଇଁ ଚିନ୍ତା କରାଗଲା । ଠିକ୍ ସେହିବର୍ଷ ଜର୍ମାନୀର ଜଣେ ବିଶିଷ୍ଟ ଶିଳ୍ପୀ ଓଟୋକୋଟିଗ୍ସବର୍ଜର ନୂଆ ରାଜଧାନୀ ଭୁବନେଶ୍ୱର ପାଇଁ ଏକ ଯୋଜନା ପ୍ରସ୍ତୁତ କଲେ। ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଓଡ଼ିଶାରେ ନୂତନ ରାଜଧାନୀ ଭୁବନେଶ୍ୱରରେ ଶିଳାନ୍ୟାସ ୧୯୪୮ ମସିହା ଅପ୍ରେଲ ୧୩ ତାରିଖ ଦିନ କରିଥିଲେ ।

ଓଡ଼ିଶାର ପ୍ରାକୃତିକ ବୈଭବ ଓ ସାଂସ୍କୃତିକ ଗୌରବ ବିଷୟରେ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ରାଜଧାନୀ ପାଇଁ ଭୁବନେଶ୍ୱର ସହରର ଯଥାର୍ଥତା ବିଷୟରେ ସେଦିନ ପଣ୍ଡିତ ଜବାହରଲାଲ ନେହେରୁ ପ୍ରତିପାଦନ କରିଥିଲେ।

ଆଧୁନିକ ଭୁବନେଶ୍ୱରକୁ କେତେକ ୟୁନିଟ୍‌ରେ ବିଭକ୍ତ କରାଯାଇଥିଲା। ପ୍ରତ୍ୟେକ ୟୁନିଟ୍‌ରେ ମାଧ୍ୟମିକ ଶିକ୍ଷାନୁଷ୍ଠାନ, ବଜାର, ଡାକ୍ତରଖାନା ଓ କ୍ରୀଡା ପ୍ରାଙ୍ଗଣ ରହିବାର ବ୍ୟବସ୍ଥା ମଧ୍ୟ ହୋଇଥିଲା। ଅଧିକାଂଶ ୟୁନିଟ୍‌ରେ ସରକାରୀ କର୍ମଚାରୀଙ୍କ ଆବାସ ପାଇଁ ବ୍ୟବସ୍ଥା କରାଯାଇଥିଲା। ତା'ଛଡା ପ୍ରଶାସନିକ ପ୍ରାସାଦ ଯଥା ରାଜ୍ୟ ସଚିବାଳୟ, ରାଜ୍ୟ ବିଧାନସଭା, ରାଜ୍ୟ ଗ୍ରନ୍ଥାଗାର, ଉତ୍କଳ ମଣ୍ଡପ, ଅଭିଲେଖାଗାର, ରବୀନ୍ଦ୍ର ମଣ୍ଡପ, ରିଜର୍ଭ ବ୍ୟାଙ୍କ ଓ ରାଜଭବନ ପ୍ରଭୃତି ମୁଖ୍ୟଦପ୍ତରମାନ ସ୍ଥାନିତ ହେଲା। ସହିଦ ନଗର, ସତ୍ୟନଗର, ନୂଆପଲ୍ଲୀ ଅଞ୍ଚଳରେ ବେସରକାରୀ ଘରମାନ ନିର୍ମାଣ କରାଯିବାର ବ୍ୟବସ୍ଥା ରଖାଯାଇଥିଲା। ୟୁନିଟ୍-୧, ୟୁନିଟ୍-୨ରେ ମୁଖ୍ୟତଃ ବଜାର ଅଞ୍ଚଳ ଗଢି ଉଠିଥିଲା। କ୍ରମଶଃ ଏହା ସହରର ମୁଖ୍ୟ ବ୍ୟବସାୟ ବାଣିଜ୍ୟର କେନ୍ଦ୍ରସ୍ଥଳ ହୋଇ ପାରିଥିଲା । ତା'ପରେ ଜନପଥ, କଟକ-ପୁରୀ ରୋଡ, ସତ୍ୟନଗର, ସହିଦନଗର, ବାପୁଜୀନଗର ଓ ଅଶୋକନଗର ଅଞ୍ଚଳରେ ଦୋକାନ ଓ ବ୍ୟବସାୟ କେନ୍ଦ୍ରମାନ ପ୍ରତିଷ୍ଠିତ ହେଲା। ଭୁବନେଶ୍ୱର ମ୍ୟୁନିସିପାଲ କର୍ପୋରେସନ ପ୍ରତିଷ୍ଠା ହେଲା ।

ଏହାବ୍ୟତୀତ ଇନ୍ଦିରା ଗାନ୍ଧି ପାର୍କ, ଗାନ୍ଧୀ ପାର୍କ, ବିଜୁ ପଟ୍ଟନାୟକ ପାର୍କ (ଫରେଷ୍ଟ ପାର୍କ), ମଧୁସୂଦନ ପାର୍କ ପ୍ରଭୃତି ସୁନ୍ଦର ପାର୍କମାନ ନିର୍ମିତ ହେଲା। ଜନବସତି କ୍ରମଶଃ ନୟାପଲ୍ଲୀ, ଜୟଦେବ ବିହାର, ଚନ୍ଦ୍ରଶେଖରପୁର, ପଟିଆ, ଶୈଳଶ୍ରୀ ବିହାର, ନନ୍ଦନକାନନ ଆଡକୁ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ କ୍ରମେ ଏହା ଖୋର୍ଦ୍ଧା ଅଭିମୁଖେ ସମ୍ପ୍ରସାରିତ ହେବାକୁ ଲାଗିଛି।

ବର୍ତ୍ତମାନ ଏହାର ଲୋକସଂଖ୍ୟା କୋଡିଏ ଲକ୍ଷ ପାଖାପାଖି ଓ ଏହା ଖୁବ୍ ଦ୍ରୁତ ଗତିରେ ବଢିଚାଲିଛି। କାରଣ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ, କ୍ରୀଡା, ଗମନାଗମନ, ଆଇଟି, ଆଇନ ଶୃଙ୍ଖଳା, ସାଂସ୍କୃତିକ ଐକ୍ୟ, ସାମ୍ପ୍ରଦାୟିକ ସଦ୍‌ଭାବନା ପ୍ରଭୃତି ଦୃଷ୍ଟିରୁ ଭୁବନେଶ୍ୱର ଦେଶର ଏକ ଆଦର୍ଶ ସହର ଭାବରେ ପରିଚିତ ହେବା ସଙ୍ଗେ ସଙ୍ଗେ ସ୍ମାର୍ଟସିଟି ନଗରୀର ମାନ୍ୟତା ପାଇଛି।

ଶାନ୍ତି ଓ ସଦ୍‌ଭାବନା ପୂର୍ଣ୍ଣ, ଧାର୍ମିକ ସମନ୍ୱୟ, ସାହିତ୍ୟ, ସଂସ୍କୃତି, ପରମ୍ପରା ଓ ଅନ୍ୟାନ୍ୟ ଭିତ୍ତିଭୂମି ଦୃଷ୍ଟିରୁ ଭୁବନେଶ୍ୱର ଏକ ଐତିହ୍ୟନଗରୀ ରୂପେ ଦଣ୍ଡାୟମାନ ହୋଇ ବିଶ୍ୱ ଦରବାରରେ ତା'ର ନାମକୁ ଋଦ୍ଧିମନ୍ତ କରିପାରିଛି।

କୋଳଥିଆ, ଭୁବନେଶ୍ୱର



# ମାନବଦେବତା ଶ୍ରୀଜଗନ୍ନାଥ

**କମଳ କୁମାର ରାଉତ**

କୋଟି କୋଟି ଭକ୍ତକଣ୍ଠରେ ସେଇ ମଧୁର ନାମ– ଜଗନ୍ନାଥ । ସେ କିଏ । ସେ ଧରାପୃଷ୍ଠରେ ଜନ୍ମଗ୍ରହଣ କରିଥିବା କୌଣସି ଅବତାର ପୁରୁଷ ନୁହଁନ୍ତି । କଳିରେ ଜଗନ୍ନାଥ ସ୍ୱୟଂବ୍ରହ୍ମ ଅଟନ୍ତି । ସେ ଭାବର ଠାକୁର, ମଣିଷର ଭାବକୁ ସେ ଅନୁଭବ କରି ପ୍ରକଟିତ ହୋଇଛନ୍ତି, ଦାସିଆର ଜାଉ ଥାଳିରେ, ମାଣିକ ଗଉଡୁଣୀର ଗାଁ ଦାଣ୍ଡରେ, ଜୟଦେବଙ୍କ ଗୀତର ଛନ୍ଦରେ, ସାଲବେଗର ଜଣାଣରେ, ଚୈତନ୍ୟଦେବଙ୍କ ସଂକୀର୍ତ୍ତନରେ ।



ଶ୍ରୀଜଗନ୍ନାଥ ହେଉଛନ୍ତି ଏକମାତ୍ର ଦେବତା, ଯାହାଙ୍କ ପାଖରେ ଆମ ଓଡ଼ିଆ ଜୀବନଶୈଳୀର ପ୍ରତିଛାୟା ଦେଖିବାକୁ ମିଳେ । ମଣିଷ ଭଳି ସେ ସକାଳୁ ଉଠନ୍ତି, ଦାନ୍ତ ଘଷନ୍ତି, ସକାଳ ବେଶ ଓ ଧୂପ, ମଧ୍ୟାହ୍ନ ଧୂପ, ରାତ୍ରି ବଡ଼ସିଂହାର ବେଶ ଓ ଧୂପରେ ମହାପ୍ରସାଦ ସେବନ କରି ରତ୍ନ ପଲଙ୍କରେ ଶୟନ କରନ୍ତି । ସାଧାରଣ ମଣିଷକୁ ଯେପରି ଜ୍ୱର ହୁଏ, ସେହିପରି ପ୍ରଭୁ ଶ୍ରୀଜଗନ୍ନାଥ ସ୍ନାନଯାତ୍ରାରେ ଅତ୍ୟଧିକ ଜ୍ୱରରେ ପୀଡ଼ିତ ହୁଅନ୍ତି । ସେତେବେଳେ ମହାପ୍ରଭୁଙ୍କ ନିତ୍ୟ ନୈମିତ୍ତିକ ମହାପ୍ରସାଦରୁ ତାଙ୍କୁ ବାରଣ ରଖାଯାଇ କେବଳ ଦୁଗ୍ଧସର, ଆମ୍ବ, ପଣସ, ସପୁରୀ, ଆତ ଆଦି ଫଳମୂଳ ଲାଗି କରାଯାଏ, ସେତେବେଳେ ଅନ୍ନ ମହାପ୍ରସାଦ ତାଙ୍କ ଚଳନ୍ତି ପ୍ରତିମା ମଦନ ମୋହନଙ୍କ ପାଖରେ ଲାଗିହୁଏ । ଜ୍ୱରରୁ ଆରୋଗ୍ୟ ପାଇଁ ଦଶମୂଳ ମୋଦକ, ବୃହତ୍ ଓ ଲଘୁ ପଞ୍ଚମୂଳ ଆଦି ମିଶାଇ ପାଚନ ପାଣି ସେବନ କରିବାକୁ ଦିଆଯାଏ । ରାଶିତେଲ, ଚୁଆ ଓ କର୍ପୂରରେ ପ୍ରସ୍ତୁତ ଫୁଲୁରି ତେଲ, ଯାହା ବର୍ଷେ ପୂର୍ବରୁ ମାଟିରେ ପୋତା ଯାଇଥାଏ, ତାକୁ ଅଣସର ପିଣ୍ଡିରେ ପଞ୍ଚମଦିନ ମହାପ୍ରଭୁଙ୍କୁ ଲାଗି ହୁଏ । ତେଲର ଏହି ଔଷଧୀୟ ଗୁଣ ଯୋଗୁଁ ଏବଂ ଦଶମୂଳରୁ ପ୍ରସ୍ତୁତ ମୋଦକ ଖାଇବା ପରେ ମହାପ୍ରଭୁ ଆରୋଗ୍ୟ ହୋଇ ନବଯୌବନ ବେଶରେ ସମସ୍ତଙ୍କୁ ଦର୍ଶନ ଦେଇ ରଥରେ ଚଢ଼ି ସଂସାର ପଥରେ ଗୁଣ୍ଡିଚା ଘରକୁ ଯାତ୍ରା କରନ୍ତି । ଭାଇ ଭଉଣୀଙ୍କୁ ଧରି ରଥରେ ମହାପ୍ରଭୁ ଗୁଣ୍ଡିଚା ଘରକୁ ନଅଦିନ ପାଇଁ ଯାଉଥିବାରୁ ପତ୍ନୀ ଲକ୍ଷ୍ମୀ ଠାକୁରାଣୀ ମହାପ୍ରଭୁଙ୍କ ଉପରେ ଅଭିମାନ କରନ୍ତି । ରଥଯାତ୍ରା ପରେ ହେରାପଞ୍ଚମୀରେ ପ୍ରଭୁଙ୍କୁ ସାକ୍ଷାତ୍ କରି ବାହୁଡ଼ିବାର ପ୍ରସ୍ତାବ ଜଣାଇବା ପରେ ରାଗ–ଅଭିମାନରେ ରଥକାଠ ଖଣ୍ଡେ ଭାଙ୍ଗି ଆଣନ୍ତି । ତା' ପରଦିନ ମହାପ୍ରଭୁଙ୍କ ରଥର ହୁଏ ଦକ୍ଷିଣମୋଡ଼, ଆଷାଢ଼ ଶୁକ୍ଳପକ୍ଷ ଦଶମୀରେ ଶ୍ରୀମନ୍ଦିରକୁ ବାହୁଡ଼ିବାର ସୂଚନା ହିଁ ଏଥିରୁ ମିଳେ । ବାହୁଡ଼ା ଦଶମୀରେ ନନ୍ଦିଘୋଷ ରଥ ରାଜନଅର ସମ୍ମୁଖରେ ପହଞ୍ଚିଲେ, ମା' ଲକ୍ଷ୍ମୀ ଠାକୁରାଣୀ ଶ୍ରୀମନ୍ଦିର ଚାହାଣି ମଣ୍ଡପରୁ ଦେଖି ସେଠାକୁ ଯାଆନ୍ତି ଓ ସେଠାରେ ଉଭୟଙ୍କ ମିଳନର ସୂତ୍ରପାତ ହୁଏ । ଅର୍ଥାତ୍ ଲକ୍ଷ୍ମୀନାରାୟଣ ବନ୍ଦାପନା ହୁଏ । ତା' ପରଦିନ

ଏକାଦଶୀରେ ମହାପ୍ରଭୁ ରଥରେ ରାଜରାଜେଶ୍ୱର ବା ଐଶ୍ୱର୍ଯ୍ୟମୟ-ସୁନାବେଶରେ ମାନବ ଜାତିକୁ ଦର୍ଶନ ଦିଅନ୍ତି। ସେହିଭଳି ଦ୍ୱାଦଶୀରେ ଅନୁଷ୍ଠିତ ଅଧରପଣା ଉତ୍ସବରେ ଅଶରୀର ଆତ୍ମା ଓ ଅନ୍ୟମାନଙ୍କ ପାଇଁ ଅଧରପଣା ହାଣ୍ଡି ରଥରେ ଭାଙ୍ଗି ତା' ପରଦିନ ତ୍ରୟୋଦଶୀରେ ନୀଳାଦ୍ରିକୁ ବିଜେ କରନ୍ତି। ସେଦିନ ରାଗ ଅଭିମାନରେ ଲକ୍ଷ୍ମୀଠାକୁରାଣୀ ନନ୍ଦିଘୋଷ ରଥରୁ ମହାପ୍ରଭୁଙ୍କୁ ଦେଖିବା ମାତ୍ରେ ଶ୍ରୀମନ୍ଦିରର ଦ୍ୱାର ବନ୍ଦ କରିଦିଅନ୍ତି। ତା'ପରେ ବୁଝାସୁଝା କରିବା ପରେ ଶ୍ରୀମନ୍ଦିରର ଦ୍ୱାର ଖୋଲେ ଏବଂ ମହାପ୍ରଭୁ ପହଣ୍ଡିରେ ଶ୍ରୀମନ୍ଦିର ଜଗମୋହନଠାରେ ବିଜେ ହେବା ପରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ କଳି ଲାଗେ। ଶେଷରେ ମହାପ୍ରଭୁ ନିଜର ଦୋଷ ସ୍ୱୀକାର କରି ପତ୍ନୀଙ୍କ ରାଗରୋଷ ଓ ମାନଭଞ୍ଜନ ନିମନ୍ତେ ବଡ଼ ରସଗୋଲାଟିଏ ଖୁଆଇ ଦିଅନ୍ତି। ଏହି ମାନବୀୟ ଲୀଳାର ପରିପ୍ରକାଶ ନିମନ୍ତେ ମହାପ୍ରଭୁ ଏ କଳିଯୁଗରେ ମାନବ ଦେବତା ରୂପରେ ଶ୍ରୀମନ୍ଦିରରେ ରତ୍ନବେଦୀରେ କାଳକାଳ ଧରି ବିରାଜିତ ହୋଇ ପୂଜା ପାଇ ଆସୁଛନ୍ତି। ତାଙ୍କର ମହାପ୍ରସାଦ ବା ଅବଢା ଅତ୍ୟନ୍ତ ପବିତ୍ର ଓ ପାପନାଶକ। ଏହାର ମହନୀୟତା ହେଉଛି ଅବଢା ଅଇଁଠା ହୁଏ ନାହିଁ। ଆଚାଣ୍ଡାଳ, ବ୍ରାହ୍ମଣ ଏହାକୁ ଏକାଠି ବସି ସେବନ କରିବାର ବିଧି ଜଗନ୍ନାଥ ସଂସ୍କୃତିର ଅନନ୍ୟ ପରମ୍ପରା ଅଟେ। କର୍ମମୟ ଜୀବନରେ ସଂସାରର ସମସ୍ତ କର୍ମ ସମାପନ ପରେ ଯେଉଁ ବର୍ଷ ଯୋଡା ଆଷାଢ ମାସ ପଡ଼େ, ସେହିବର୍ଷ ତାଙ୍କର ହୁଏ ନବକଳେବର। ସମଗ୍ର ବିଶ୍ୱରେ କେବଳ ମହାପ୍ରଭୁ ହିଁ ମାନବରୂପ ଧାରଣ କରିଥିବାରୁ ପରଂବ୍ରହ୍ମ ପୁରୁଣା କଳେବର ଛାଡ଼ି ନୂଆ କଳେବର ଧାରଣ କରନ୍ତି, ପୁରୁଣା ବିଗ୍ରହକୁ କୋଇଲି ବୈକୁଣ୍ଠରେ ପୋତି ଦିଆଯାଏ।

ମାନବୀୟ ମୈତ୍ରୀ ଭାବନାର ଇଷ୍ଟଦେବ ରୂପେ ଶ୍ରୀଜଗନ୍ନାଥ ପରିକଳ୍ପନା ଅଦ୍ୱିତୀୟ, ବିରାଟ ଓ ଉଦାର। ସର୍ବ ମଙ୍ଗଳେ ଜଗନ୍ନାଥ ସ୍ମରଣ କରିଦେଲେ ଓଡ଼ିଆ ପ୍ରାଣରେ ଆବେଗ ଓ ଉଚ୍ଛାଟ ଆପେ ଆପେ ସଞ୍ଚରିଯାଏ। ବହୁ କାହାଣୀର ନେପଥ୍ୟ ନାୟକ ସେ। ବହୁ ଘଟଣାର କେନ୍ଦ୍ରବିନ୍ଦୁ। ବହୁ ଆଲେଖ୍ୟର ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରେରଣା ବି। ସେଇ ଶ୍ରୀଜଗନ୍ନାଥ ଯାହାର ପଲକ ମାତ୍ରେ କରୁଣା ଲାଭ କରି ଜୀବଜଗତ ଧନ୍ୟ ହୋଇଯାଏ। ହେ ମହାପ୍ରଭୁ ତୁମକୁ ମୋର କୋଟି କୋଟି ପ୍ରଣାମ।

ଘର ନଂ-୧୨୯୧ (ଦ୍ୱିତୀୟ ପର୍ଯ୍ୟାୟ)
ଡୁମୁଡୁମା ହାଉସିଂ ବୋର୍ଡ଼ କଲୋନୀ
ଡୁମୁଡୁମା, ଭୁବନେଶ୍ୱର



# ଜନଜାତିର ''ଜାହିରା'' କଳା ଓ ଭାସ୍କର୍ଯ୍ୟ

ଅସୀମା ସାହୁ

ଆଦିବାସୀ ଦୈନନ୍ଦିନ ଜୀବନଶୈଳୀରେ ଜାହିରାର ଭୂମିକା ଗୁରୁତ୍ୱପୂର୍ଣ୍ଣ ଅଟେ । ଓଡ଼ିଶାର ବିଭିନ୍ନ ସ୍ଥାନରେ ବିଶେଷକ କରି ମୟୂରଭଞ୍ଜ ଜିଲ୍ଲାରେ ''ଜାହିରା'' ଆଦିବାସୀ ସମ୍ପ୍ରଦାୟର ମନ୍ଦିର ସଦୃଶ ଯାହାକି ଜୀବଜନ୍ତୁଙ୍କ ପ୍ରତିମୂର୍ତ୍ତି, ଶାଳ ଓ ଅନ୍ୟାନ୍ୟ ବୃକ୍ଷ, ଔଷଧୀୟ ଗୁଳ୍ମ ଓ ପଥର ଦ୍ୱାରା ସୁସଜ୍ଜିତ ହୋଇଛି ଗ୍ରାମର ସୀମାରେ ଥାଏ । ଜାହିରାକୁ ପୂଜା କରୁଥିବା ପୂଜକଙ୍କୁ ''ନାୟକେ'' କୁହାଯାଏ'' । ଜାହିରା ପ୍ରକୃତି ପୂଜାର ଏକ ପ୍ରତୀକ ଅଟେ କାରଣ, ପୂର୍ବକାଳରେ ଆଦିବାସୀମାନେ ଜଙ୍ଗଲ ଓ ଜୀବଜନ୍ତୁଙ୍କର ଯତ୍ନ ନେବା ପାଇଁ ପ୍ରକୃତିକୁ ଦେବତା ଭାବରେ ପୂଜା କରିଆସୁଥିଲେ । ଯେହେତୁ ଆଦିବାସୀ ସମ୍ପ୍ରଦାୟ ଜୀବନ ଜୀବିକା ପାଇଁ ଚାଷ ଉପରେ ନିର୍ଭରଶୀଳ ତେଣୁ ତାଙ୍କର ବିଶ୍ୱାସ ଥିଲା ଯେ ଜଳ ବିନା ଚାଷ ଅସମ୍ଭବ ଆଉ ଜଙ୍ଗଲ ବିନା ଜଳ ମିଳିପାରିବ ନାହିଁ । ଜଙ୍ଗଲର ପରିବାର କହିଲେ ବୃକ୍ଷରାଜି ଓ ଜୀବଜନ୍ତୁଙ୍କୁ ବୁଝାଏ । ତେଣୁ ବୃକ୍ଷଦେବତା ଓ ଜୀବଜନ୍ତୁଙ୍କ ପୂଜାକୁ ସେମାନେ ଆପଣେଇଥିଲେ । ଅନ୍ୟପକ୍ଷରେ ଦେବ ଦେବ ମହାଦେବ ଯେହେତୁ ଜଙ୍ଗଲ ନିବାସୀ ତେଣୁ ମହାଦେବଙ୍କୁ ମଧ୍ୟ ବଡ଼ଠାକୁର ଭାବେ ବିଶ୍ୱାସ କରୁଥିଲେ । ସେଇଥିପାଇଁ ଜାହିରାରେ ପଥର, ଜୀବଜନ୍ତୁଙ୍କ ପ୍ରତିମୂର୍ତ୍ତି ଶାଳ ତଥା ଅନ୍ୟାନ୍ୟ ବୃକ୍ଷ ଆଦି ଦେଖିବାକୁ ମିଳେ ।

ଆଦିବାସୀ ସମ୍ପ୍ରଦାୟର ପ୍ରତ୍ୟେକ ପୂଜାପାର୍ବଣ, ବାହାଘର ଓ ଅନ୍ୟାନ୍ୟ ମାଙ୍ଗଳିକ କାର୍ଯ୍ୟ ଜାହିରାରୁ ପୂଜା ଅର୍ଚ୍ଚନା ପରେ ଆରମ୍ଭ ହୁଏ । ଏପରିକି ଗ୍ରାମର ଆର୍ଥିକ ଆକଳନ ଓ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ଜାହିରା ମାଧ୍ୟମରେ ଗ୍ରହଣ କରାଯାଇଥାଏ । ପ୍ରତ୍ୟେକ ଋତୁରେ ହେଉଥିବା ଗ୍ରାମର ପହିଲି ଫଳ, ଜଙ୍ଗଲର ଫଳ, ଶସ୍ୟ ଆଦିକୁ ଜାହିରାରେ ପୂଜା ଅର୍ଚ୍ଚନା କରିବା ପରେ ଅର୍ପଣ କରାଯାଏ । ତା'ପରେ ସେ ସବୁକୁ ଭୋଗ ଭାବରେ ଗ୍ରାମବାସୀମାନେ ସେବନ କଲାପରେ ଯାଇ ଘରୋଇ ଖାଦ୍ୟ ଭାବରେ ବ୍ୟବହାର କରାଯାଇଥାଏ । ଏଥିରୁ ଜଣାପଡୁଛି ଜାହିରା ଆଦିବାସୀ ସମ୍ପ୍ରଦାୟର ସୁଖ ଦୁଃଖର ସାଥୀ ଭାବରେ କେଉଁକାଳରୁ ରହି ଆସିଛି ।

ପୂଜାସ୍ଥାନ ବିଶେଷରେ ମଧ୍ୟ ଜାହିରାକୁ ପ୍ରକାର ଭେଦ କରାଯାଇଥାଏ । ବଡ଼ ଜାହିରା ଓ ସାନ ଜାହିରା । କେବଳ ତଫାତ୍ ଏତିକି ଯେ ଜାହିରାରେ ବୃକ୍ଷ, ଜୀବଜନ୍ତୁଙ୍କ ପ୍ରତିମୂର୍ତ୍ତି ଓ ପଥର ଆଦି ଥିବାବେଳେ ସାନଜାହିରା ଗ୍ରାମରେ ଥିବା ସାଧାରଣ ପଡ଼ିଆପରି । ଦୁଇଟି ବଡ଼ପୂଜା ବଡ଼ ଜାହିରାରେ ଅନୁଷ୍ଠିତ ହୋଇଥାଏ । ସେଗୁଡ଼ିକ ହେଲା ବାହାବଙ୍ଗା ପରବ୍ ଓ ମା'ମାଣେ ପରବ୍ ।

''ବାହାବଙ୍ଗାପରବ'' ଫଗୁଣ ମାସରେ ଥିବା ଅମାବାସ୍ୟାର ପାଞ୍ଚଦିନପରେ ଅନୁଷ୍ଠିତ ହୁଏ । ଅର୍ଥ ହେଲା ଫୁଲ ଓ ପରବ୍ ଅର୍ଥ ହେଲା ପର୍ବ । ତେଣୁ ଏହା ଫୁଲର ପର୍ବ ବୋଲି ବୁଝାଯାଇଥାଏ । ଏହି ବାହାବଙ୍ଗ ପର୍ବ ''ମୁଲୁକ୍ ମଣେ ହୋ'' ବା ''ଶାଳେଇପୂଜା'' ବା ''ବାହାବଙ୍ଗା ପରବ ବୋଲି ବେଶ ଜନାଦୃତ । ଏହି ପୂଜାର ପ୍ରଧାନ ଉଦ୍ଦେଶ୍ୟ ହେଲା ଫଗୁଣ ମାସରେ ନୂଆକରି ଫୁଟିଥିବା ଶାଳ ଫୁଲ ଓ ମହୁଲ ଫୁଲକୁ ଠାକୁରଙ୍କୁ ଅର୍ପଣ କରିବା । ନାୟକେ ସେସବୁ ଫୁଲକୁ ଅର୍ପଣ କରି ପୂଜାର୍ଚ୍ଚନା କରିଥାନ୍ତି ।

ସେହିପରି ''ମା ମାଣେ ପରବ୍'' ବଡ଼ ଜାହିରାରେ ପୌଷ ମାସରେ ଅନୁଷ୍ଠିତ ହୁଏ । ମାତ୍ର ଏ ପୂଜା ସମୟକାଳ

''ମାଝି ହାଡ଼ାମ୍'' ବା ଗ୍ରାମର ମୁଖିଆଙ୍କ ମାନସିକ କରିବା ଉପରେ ନିର୍ଭର କରିଥାଏ । ହୁଏତ ତାହା ପ୍ରତିବର୍ଷ ହୋଇପାରେ । ଦୁଇବର୍ଷରେ ଥରେ ବା ପାଞ୍ଚବର୍ଷରେ ମଧ୍ୟ ହୋଇପାରେ । ଗ୍ରାମରେ ପଶୁପକ୍ଷୀ ମଣିଷ ସବୁ ସୁସ୍ଥ ରହିବା ପାଇଁ ଓ ଗ୍ରାମବାସୀଙ୍କୁ ବସନ୍ତ, ଝାଡ଼ାବାନ୍ତି ଆଦି ରୋଗ ଦାଉରୁ ରକ୍ଷା କରିବା ପାଇଁ ମାଝି ହାଡ଼ାମ୍ ମାନସିକ କରେ ଓ ସେହି ଅନୁସାରେ ପୂଜା ଅନୁଷ୍ଠିତ ହୁଏ । ଉଭୟ ପୂଜାରେ ସମସ୍ତ ଖର୍ଚ୍ଚ ଗ୍ରାମବାସୀମାନେ ମିଳିମିଶି ବହନ କରନ୍ତି ।

ଛୋଟ ଜାହିରାରେ ତିନୋଟି ପୂଜା ଅନୁଷ୍ଠିତ ହୋଇଥାଏ । ରଜ ପରେ ଚାଷ କାମ ଆରମ୍ଭିବା ଆଗରୁ ଭଲ ଅମଳ ପାଇଁ ''ଆଶାଡ଼ିହେ'' ପୂଜା ହୋଇଥାଏ, ସେହିପରି କାଳୀପୂଜାରେ ''ଗୋଡ଼ ବଙ୍ଗା'' ପୂଜା ହୋଇଥାଏ ଯେଉଁଥିରେ କି ଗାଈଗୋରୁଙ୍କ ବନ୍ଦାପନା କରାଯାଇ ନଚା ଯାଇଥାଏ । ମକର ବାସୀ ମାଘମାସରେ ଜଙ୍ଗଲକୁ ଡ଼ାଳପତ୍ର କାଟିବାପାଇଁ ଯିବା ଆଗରୁ ବା ଶିକାରକୁ ଯିବା ପୂର୍ବରୁ ସାନ ଜାହିରାରେ ''ମାଗ୍‌ବଙ୍ଗା'' ପୂଜା ଆଦିବାସୀଙ୍କ ପୂଜକ ନାୟକେ କରିଥାଏ । ସାନ ଜାହିରାରେ ଏସବୁ ପୂଜା ବେଳେ ହାଣ୍ଡିଆ ଭୋଗ ଲାଗେ । ଗ୍ରାମବାସୀମାନେ ହାଣ୍ଡିଆକୁ ମଧ୍ୟ ପ୍ରସାଦ ଭାବରେ ସେବନ କରି ନାଚ ଗୀତରେ ମଜ୍ଜି ଯାଆନ୍ତି ।

ଜାହିରା ଭରସା ଓ ବିଶ୍ୱାସର ଆଶ୍ରୟସ୍ଥଳ । ଜନ୍ମ ବର୍ଷ ଆଗରୁ ଆଦିବାସୀମାନେ ଜୀବିକା ପାଇଁ କୃଷିଛଡ଼ା ଜଙ୍ଗଲ ଉପରେ ମଧ୍ୟ ଅଧିକ ନିର୍ଭରଶୀଳ ଥିଲେ । ଜଙ୍ଗଲଜାତ ଖାଦ୍ୟ ଓ ଜାଳେଣି ପାଇଁ ନିଘଞ୍ଚ ଜଙ୍ଗଲକୁ ସେମାନଙ୍କୁ ଯିବାକୁ ପଡୁଥିଲା, ଯେଉଁଠିକି ଜଙ୍ଗଲର ହିଂସ୍ରଜନ୍ତୁମାନଙ୍କ ପାଇଁ ସେମାନଙ୍କ ଜୀବନ ବିପଦ ହୋଇପଡୁଥିଲା । ତେଣୁ ପରିବାରର ପୁରୁଷ ସଦସ୍ୟମାନେ ଜଙ୍ଗଲକୁ ଯିବା ସମୟରୁ ଫେରିବା ପର୍ଯ୍ୟନ୍ତ ଘରେ ରହିଥିବା ମହିଳାମାନେ ଆତ୍ମୀୟମାନଙ୍କ ସଫଳ ଓ କୁଶଳ ପ୍ରତ୍ୟାବର୍ତ୍ତନ ପାଇଁ ଜାହିରାକୁ ଯାଇ ଶୁଭ ମନାସୀ ପୂଜାର୍ଚ୍ଚନା କରୁଥିଲେ । ଯେହେତୁ ନିଜ ବିଶ୍ରାମ ପାଇଁ ଜାହିରାରେ ଦୁଇଚାଳିର ବିଶ୍ରାମ ଘର କରିବା ମହିଳାଙ୍କ ପାଇଁ କଷ୍ଟକର ତେଣୁ ସେମାନେ ଏକଚାଳିର ବିଶ୍ରାମ ଗୃହ ଜାହିରାରେ ତିଆରି କରୁଥିଲେ । ଏହି ଧାରାରେ ଏବେମଧ୍ୟ ଜାହିରା ଭିତରେ ଏକଚାଳି ବିଶ୍ରାମଗୃହ ଥିବାର ଦେଖିବାକୁ ମିଳେ । ଆଗକୁ ଜାହିରା ମାଧ୍ୟମରେ ଈଶ୍ୱର ବିଶ୍ୱାସ ପରମ୍ପରା ରହିଆସିବା ସହିତ ପରିବେଶ ସନ୍ତୁଳିତ ହୋଇ ଋତୁ ବିବିଧତାର ତାରତମ୍ୟ ଆଦୌ ନଥିଲା ।

କିନ୍ତୁ ଦୁଃଖ ଓ ପରିତାପର ବିଷୟ ଯେ ଆଜି ଜାହିରାର ରୂପରେଖ ବଦଳି ଯାଇଛି । ଭାବ ବଦଳରେ କେବଳ ପ୍ରଥା ଦେଖିବାକୁ ମିଳୁଛି । ଆଧୁନିକତାର ଛାପ ବେଶ ପରିଲକ୍ଷିତ ହେଉଛି । ଏହାର ପ୍ରଧାନ କାରଣ ହେଲା ସହରାଭିମୁଖୀ ଚିନ୍ତାଧାରା । ଧୀରେ ଧୀରେ ଜାହିରା ତା'ର ପୂର୍ବ ଅସ୍ତିତ୍ୱକୁ ହରାଇ ଅବକ୍ଷୟ ଆଡ଼କୁ ଗତି କରୁଛି । ବର୍ତ୍ତମାନର ସରକାର ଜଙ୍ଗଲ ବିଭାଗ ମାଧ୍ୟମରେ ଜାହିରାର ପୁନରୁଦ୍ଧାର କାର୍ଯ୍ୟକ୍ରମକୁ ହାତକୁ ନେଇଥିଲେ ମଧ୍ୟ ସେସବୁରେ ଆଧୁନିକତାର ଛାପ ବେଶ୍ ପ୍ରସ୍ଫୁଟିତ । ଜାହିରା ମଧ୍ୟରେ ନଳକୂପ ଖନନ, ବିଶ୍ରାମଗାର ସ୍ଥାପନ, ଆବର୍ଜନା କୁଣ୍ଡ, ସିମେଣ୍ଟ ତିଆରି ଘୋଡ଼ା ହାତୀଙ୍କ ପ୍ରତିମୂର୍ତ୍ତି ସ୍ଥାପନ, କଣ୍ଟାବାଡ଼ ବା ପାଚେରୀ ନିର୍ମାଣ ଆଦି ତିଆରି କରାଯିବା ଦ୍ୱାରା ଆଧୁନିକ ଜାହିରା ଯେ ଦିନେ ତା'ର ସମସ୍ତ ମୌଳିକତାକୁ ହରେଇ ବସିବ, ଏହା ନିଃସନ୍ଦେହ ।

ଶେଷରେ ଏତିକି କୁହାଯାଇପାରେ ପୂର୍ବପୁରୁଷଙ୍କ ଚିନ୍ତାଧାରା ଓ ଉଦ୍ଦେଶ୍ୟକୁ ସମ୍ମାନ ଜଣାଇ ଜାହିରାକୁ ପୁରୁଣା ଢ଼ାଞ୍ଚାରେ ପୁନରୁଦ୍ଧାର କରାଗଲେ ଯେଉଁ ଉଦ୍ଦେଶ୍ୟରେ ଜାହିରା ଏତେଦିନ ଧରି ଆଦିବାସୀଙ୍କର ପରମ ପବିତ୍ର ପୀଠର ମାନ୍ୟତା ପାଇଆସିଅଛି, ସେ ଉଦ୍ଦେଶ୍ୟ ସାଧିତ ହୋଇପାରିବ । ଜାହିରା ପୂଜାସହ ପ୍ରକୃତି ପୂଜାକୁ ଗୁରୁତ୍ୱ ଦିଆଗଲେ ''ଜାହିରା ପୂଜା ଯେ ପ୍ରକୃତିର ପୂଜା ଏହା ଦିଗହରା ମାନବ ଜାତି ପାଇଁ ଏକ ସୁନ୍ଦର ବାର୍ତ୍ତା ଆଣି ଜନସଚେତନାର ମାର୍ଗ ଉନ୍ମୁକ୍ତ କରିପାରିବ ।

ମଧୁବନ, ବାରିପଦା
ମୟୂରଭଞ୍ଜ-୭୫୭୦୦୧



# ଭଗବତ ପ୍ରାପ୍ତିର ସତ୍ୟାନ୍ୱେଷଣ

ଡକ୍ଟର ଗୋପାଳ ଚନ୍ଦ୍ର ବାରିକ

ପ୍ରତ୍ୟେକ ଜୀବାତ୍ମାର ଲକ୍ଷ୍ୟ ହେଉଛି ଜୀବନରେ ମୁକ୍ତି ଲାଭ କରିବା । ପ୍ରଭୁ ଜଗନ୍ନାଥ ହେଉଛନ୍ତି ଜୀବନର ତ୍ରାଣକର୍ତ୍ତା ଓ ମୁକ୍ତିଦାତା । ମୁକ୍ତିର ପ୍ରତ୍ୟେକ ଦ୍ୱାରକୁ ସେ ଉନ୍ମୁକ୍ତ କରି ରଖିଛନ୍ତି । ଯିଏ ଯେମିତି କର୍ମ କରୁ ତା'ର କର୍ମରେ କିଛି ଆନୁଗତ୍ୟ ଓ ଭାବର ଭକ୍ତି ଥିଲେ ତା'ର ମୁକ୍ତିର ବାଟ ଆପେ ଆପେ ଖୋଲି ଯାଇଥାଏ । ଭଗବାନ କହିଛନ୍ତି ମୋ ପାଖରେ ଶରଣ ନେଲେ ଜୀବ ତିନିଗୋଟି ଯନ୍ତ୍ରଣାରୁ ମୁକ୍ତି ପାଇଥାଏ । ଜୀବନରେ ଚାପ ତଥା ଦୁଃଖ ଓ ଯନ୍ତ୍ରଣାରୁ ମୁକ୍ତି ମିଳିଥାଏ । ପ୍ରଭୁ ଜଗନ୍ନାଥ ଜୀବାତ୍ମାର ତ୍ରିତାପ ଦୁଃଖରୁ ପରିତ୍ରାଣ କରିଥାନ୍ତି । ଏ କଥା ସତ ଯେ ଜୀବ ତା'ର ସ୍ୱକର୍ମ କରିଲାବେଳେ ସବୁଦିଗରୁ ଚିନ୍ତାକରି ଯଦି କର୍ମ କରିଚାଲିବ ପ୍ରଭୁ ନିଶ୍ଚୟ ସେଥିରୁ ତାକୁ ମୁକ୍ତି ଦେବେ । ତେଣୁ ଜୀବର ସୁଖ, ଦୁଃଖ, ଆନନ୍ଦ ଓ ଶାନ୍ତି ସେହି ମନର ଅବସ୍ଥା ଉପରେ ନିର୍ଭର କରିଥାଏ । ତେଣୁ କୁହାଯାଇଛି ଭାଗବତରେ ଭଗବାନ ତାଙ୍କର ପ୍ରିୟ ଶିଷ୍ୟ ଉଦ୍ଧବଙ୍କୁ କହିଛନ୍ତି 'ମନ ତୋହର ନିଜ ଗୁରୁ, ଉଦ୍ଧବ କେତେତୁ ପଚାରୁ ।' ଅର୍ଥାତ ହେ ଜୀବ ତୁ ତୋର ନିଜଗୁରୁ ହୋଇ ନିଜକୁ ଠିକ୍ ରାସ୍ତାରେ ପରିଚାଳିତ କରିପାରିଲେ ଉଦ୍ଧବ ବା ଉପରଧବକୁ କିଛି ପଚାରିବା ଦରକାର ନାହିଁ । ପରମାତ୍ମା ତୁମକୁ ମାର୍ଗ ଦର୍ଶନ ଦେଖାଇଛନ୍ତି ତୁମେ ସେହି ପଥକୁ ଅନୁସରଣ କରି ତାଙ୍କୁ ସ୍ମରଣ କରି ଆଗେଇ ଚାଲିଲେ ଜୀବାତ୍ମା ନିଶ୍ଚୟ ପରମାତ୍ମା ସହିତ ମିଳନ ହୋଇପାରିବ ।

'ମନ' ଏକ ଚଂଚଳ ସ୍ୱଭାବର ପ୍ରକୃତି । ମନକୁ ଯେପରି ରଙ୍ଗରେ ରଙ୍ଗାଇବ ତାହା ସେହିପରି ହେବ । ପ୍ରଥମେ ତୁମେ ଚଂଚଳ ମନ ରୂପକ ଅଶ୍ୱକୁ ଲଗାମ ଦେଇ ନିଜ ଆୟତକୁ ଆଣି ପାରିଲେ ଆଉ ସବୁ ଇନ୍ଦ୍ରିୟ ଆପେ ଆପେ ସଜାଡି ହୋଇଯିବେ । କାହିଁକି ନା ସେହି ମନ ମଧ୍ୟରେ ସତ୍ୱ, ରଜ ଓ ତମ ଗୁଣର ପ୍ରକୃତି ପରିପୂର୍ଣ୍ଣ ହୋଇ ରହିଛି । ତେଣୁ ଚିନ୍ତା କରିବ କେମିତି ତିନିଗୁଣ ସମାହାରର ମନକୁ ଆୟତ କରିବାକୁ । ମନ ସଂଯମ ଓ ସ୍ଥିର ହେଲେ ଧ୍ୟାନ ଓ ସମାଧି ସହଜ ହୋଇଥାଏ । ମନ ନିୟନ୍ତ୍ରିତ ହେଲେ ଜୀବନରେ ପରମ ଶାନ୍ତି ଲାଭ ହୁଏ । ଧର୍ମପଥରେ ଚାଲୁଥିବା ବ୍ୟକ୍ତିମାନେ ଅଭ୍ୟାସ ଓ ବୈରାଗ୍ୟ ମାଧ୍ୟମରେ ମନକୁ ସଂଯମ କରିବାକୁ ସମର୍ଥ ହୋଇଥାଆନ୍ତି । ଯେଉଁମାନେ ପରମାତ୍ମାକୁ ବିଶ୍ୱାସ କରନ୍ତି, ସେମାନେ ନିଜର ଇଚ୍ଛାଶକ୍ତି ବଳରେ ତିନିଗୁଣକୁ ଅତିକ୍ରମ କରି ସଂଯମ ଲାଭ କରିଥାନ୍ତି । ଏଥିପାଇଁ ଭଗବାନଙ୍କର ସଦୟ ରହିବା ନିହାତି ଜରୁରୀ । ଜୀବାତ୍ମା ତା'ର କର୍ମଦ୍ୱାରା ଯାହା ସାଧନ କରିପାରେ ନାହିଁ, ପ୍ରଭୁଙ୍କର କୃପା ହେଲେ ତାହା ସହଜରେ ଲାଭ କରିହୁଏ । ଏହି କୃପା ଓ ମୁକ୍ତି ପାଇବାକୁ ହେଲେ ନିଜକୁ ଭଗବାନଙ୍କଠାରେ ସମର୍ପଣ ଭାବ କରିଦେବାକୁ ହେବ ।

ମନରେ ସବୁବେଳେ ଚେତନାର ସୂକ୍ଷ୍ମ ଜାଗୃତି ଉଦ୍ରେକ ହେବା ଦରକାର । ଚେତନ, ଅବଚେତନ ଓ ଅତିଚେତନର ସାର ମନର ଶତଦଳ ପାଖୁଡାରେ ଲୁକ୍କାୟିତ ଭାବରେ ରହିଥାଏ । ଏହି ଅତିଚେତନ ବା ଅତିମାନସ ମନ ନିଜର ଆତ୍ମାଠାରୁ ଅଭିନ୍ନ । ଏହାକୁ ଜୀବ ଅନେକ ସମୟରେ ଚେତନ କରିବାକୁ ପ୍ରୟାସ କରିଥାଏ । ଯାହା ଆସେ କିନ୍ତୁ ସାଧନା ଦ୍ୱାରା ତାକୁ ଆୟତ କରି ହୋଇ ନ ଥାଏ । ଯାହାଦ୍ୱାରା ଜୀବର ଥିବା

ଶୁଦ୍ଧମନ ବା ଶୁଦ୍ଧବୁଦ୍ଧି କୁମନ ବା କୁବୁଦ୍ଧିରେ ପରିଣତ ହୋଇଥାଏ । ଶ୍ରୀରାମକୃଷ୍ଣ ଦେବଙ୍କ ମତରେ ଶୁଦ୍ଧମନ ଆତ୍ମାଠାରୁ ଅଭିନ୍ନ ଶୁଦ୍ଧମନ ଶୁଦ୍ଧବୁଦ୍ଧି ଓ ଶୁଦ୍ଧଆତ୍ମା ଏକ ବା ଏକାକାର ହୋଇଥାଏ । ଏହି ଶୁଦ୍ଧମନରେ ଭଗବାନଙ୍କୁ ଧ୍ୟାନ କରିପାରିଲେ ଜୀବ ତାର ଇପସିତ ସଚ୍ଚିଦାନନ୍ଦ ଲାଭ କରିଥାଏ । ତାହାଙ୍କୁ ସାକାର ଓ ନିରାକାର ଭାବରେ ଜପ, ଧାନ ଓ ପୂଜା ଉପାସନା କରାଯାଇଥାଏ । ଖାଲି ଏତିକିରେ ସନ୍ତୁଷ୍ଟ ହେବା ଉଚିତ ନୁହେଁ ତେଣୁ ପ୍ରଥମେ ଭାବ କର ଏବଂ ଭାବରୁ ଧୀରେ ଧୀରେ ପ୍ରେମ ଉତ୍ପନ୍ନ ହେବ । ତା'ପରେ ତୁମେ ସେହି ନିରାକାରଙ୍କୁ ଭାବ ଏବଂ ପ୍ରେମକରି ତୁମର ଇଚ୍ଛାକୁ ସାର୍ଥକ କରିପାରିବ ।

ପରମାତ୍ମାଙ୍କୁ କେବଳ ଜୀବାତ୍ମା ନିଜର ଦିବ୍ୟ ଚେତନାରେ ଅନୁଭବ କରିପାରେ । ଏଥିପାଇଁ କୌଣସି ସ୍ଥୂଳ ପଦାର୍ଥ ବା ବୈଦିକ କ୍ରିୟା ଯଥା- ହୋମ ଯଜ୍ଞ କ୍ରିୟାକଳାପର ବିଶେଷ ଆବଶ୍ୟକ ହୋଇ ନ ଥାଏ । ତେଣୁ ତାଙ୍କୁ ଆମ ହୃଦୟର ସୂକ୍ଷ୍ମ ଭାବ ଓ ପ୍ରେମରେ ଆରାଧନା କଲେ ପରମାତ୍ମାଙ୍କର ପ୍ରାପ୍ତି ସହଜ ହୋଇଥାଏ । ଈଶ୍ୱରଙ୍କୁ କେବଳ ନିତ୍ୟ-ସନାତନ ଭାବରେ ଅତିମାନବ ସ୍ତରରେ ଉପାସନା କରାଯାଇ ପାରେ ବା ଶ୍ରଦ୍ଧା ଓ ଭକ୍ତିରେ ପରମାତ୍ମାଙ୍କୁ ନିଜର କରିହୁଏ । ଏସବୁର ମୂଳ କାରଣ ହେଲା ଶ୍ରଦ୍ଧା ଓ ବିଶ୍ୱାସ । କଥାରେ ଅଛି, 'ବିଶ୍ୱାସେ ମିଳଇ ହରି, ତର୍କେ ବହୁ ଦୂର' । ସବୁବେଳେ ମନେ ରଖିବାକୁ ହେବ ଆତ୍ମା ପରମାତ୍ମାଙ୍କୁ ଚିନ୍ତନ ବା ମନନ କଲେ ନିଶ୍ଚେ ତୁମେ ତାଙ୍କର ସତ୍ତା ଉପଲବ୍ଧି କରିପାରିବ । ସେଥିପାଇଁ ତୁମକୁ ବିଷୟାବାସନାଠାରୁ ନିଜର ମନକୁ ଦୂରେଇ ରଖିବାକୁ ହେବ । ଚିତ୍ତକୁ ପ୍ରଶାନ୍ତ, ନିର୍ମଳ, ବିଶୁଦ୍ଧ ଓ ଅନ୍ତର୍ମୁଖୀ ହେବା ନିହାତି ବାଂଛନୀୟ ।

ଭଗବାନ ମନୁଷ୍ୟକୁ ଆତ୍ମୋଦ୍ଧାର ଉଦ୍ଦେଶ୍ୟରେ ମାନବ ଶରୀର ପ୍ରଦାନ କରିଛନ୍ତି । ବାସ୍ତବରେ ମାନବଜନ୍ମ ଭଗବାନଙ୍କର ସଙ୍ଗ ଉପଲବ୍ଧ କରିବାର ଏକ ସାଧନାକ୍ଷେତ୍ର । ତେଣୁ ପ୍ରତ୍ୟେକ ମନୁଷ୍ୟ ଆତ୍ମକଲ୍ୟାଣ କରିବା ସଙ୍ଗେ ସଙ୍ଗେ ଜନ୍ମମରଣରୁ ମୁକ୍ତ ହୋଇପାରିବ । କେତେ ଜନ୍ମର ପରାଭାବ ବା ଆତ୍ମଶୁଦ୍ଧି ହେବାର ପ୍ରକୃଷ୍ଟ ଉପାୟ ଏହି ମଣିଷଜନ୍ମ । ବସ୍ତୁତଃ ସେ ମୁକ୍ତ ସ୍ୱରୂପ ହୋଇଥିବାରୁ ସେ ପରମାତ୍ମାଙ୍କୁ ଲାଭ କରିପାରିବ ଏବଂ ପରମାତ୍ମା ତାକୁ ସ୍ୱତଃ ପ୍ରାପ୍ତ ହୋଇଥିବାରୁ ସେ ପରମାତ୍ମାକୁ ଅନୁଭବ କରିପାରିବ । ଆଜି ପର୍ଯ୍ୟନ୍ତ ଆମେ ଅନେକ ଯୋନିରେ ବାରମ୍ବାର ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଆମର କୌଣସି ଶରୀର ସହିତ ସମ୍ପର୍କ ନାହିଁ । ଅତଏବ ଆମର ପରାମାତ୍ମାଙ୍କ ସହିତ ଓ ଶରୀରର ସଂସାର ସହିତ ଅବିଭାଜ୍ୟ ସମ୍ବନ୍ଧ ରହିଛି ବୋଲି ସ୍ୱୀକାର କରିବା ଉଚିତ୍ । ଶରୀର ଦ୍ୱାରା ଯାହା କିଛି କରିବା, ତାହା ସଂସାର ପାଇଁ ଉପଯୋଗୀ ହୋଇପାରିବ କିନ୍ତୁ ନିଜ ପାଇଁ ନୁହେଁ ।

ଛାଡି ଚାଲି ଯାଉଥିବା ଶରୀରର ନାମ ମନୁଷ୍ୟ ନୁହେଁ । ଶରୀର ଏକ କର୍ମସାମଗ୍ରୀ ମାତ୍ର । ଏହାର ଉପଯୋଗିତା ଅଛି କେବଳ ଅନ୍ୟମାନଙ୍କର ସେବା କରିବା । କିନ୍ତୁ ଯେତେବେଳେ ମନୁଷ୍ୟ ମିଳିଥିବା ଓ ଛାଡି ଚାଲିଯାଉଥିବା ଶରୀର, ବସ୍ତୁ, ଯୋଗ୍ୟତା, ସାମର୍ଥ୍ୟ ଇତ୍ୟାଦିକୁ ନିଜର ଓ ନିଜ ପାଇଁ ମନେକରେ ସେତେବେଳେ ସେ କୌଣସି ପ୍ରକାରର ଯୋଗୀ ହୋଇପାରେ ନାହିଁ ବରଂ ଭୋଗୀ ହୋଇଯାଇଥାଏ । ଭୋଗୀ ହେଲେ ଲୋଭ ହୁଏ, ଲୋଭରୁ ମୃତ୍ୟୁ ହୋଇଥାଏ । ଭୋଗୀ ଲୋକ ନିଜେ ଦୁଃଖ ପାଏ ଓ ଅନ୍ୟମାନଙ୍କୁ ମଧ୍ୟ ଦୁଃଖ ଦେଇଥାଏ । ସର୍ବପ୍ରଥମ କଥା, ମନୁଷ୍ୟ ନିଜର ଉଦ୍ଦେଶ୍ୟକୁ ଭାବିବା ଦରକାର । ଯେତେବେଳେ ମାଆର ଗର୍ଭରେ ସଂଚାର ହେଲି ସେତେବେଳେ ପରମାତ୍ମାଙ୍କୁ କ'ଣ କହି ଆସିଥିଲି । ଆଉ ମାଆ ଗର୍ଭରୁ ଆସି ଯେତେବେଳେ ଏ ଦୁନିଆଁ ବିଷୟରେ ସବୁ ଜାଣିଲି ବୁଝିଲି ସେତେବେଳେ ସବୁକଥା ଭୁଲିଗଲି । ତାହା ନୁହେଁ ତୁମେ ଚିନ୍ତାକର ମୁଁ ସଂସାରୀ ନୁହେଁ ମୁଁ ସାଧକ, ମୁଁ ସ୍ତ୍ରୀ, ମୁଁ ପୁରୁଷ, ମୁଁ ବ୍ରାହ୍ମଣ, ମୁଁ କ୍ଷତ୍ରିୟ, ମୁଁ ବୈଶ୍ୟ, ବ୍ରହ୍ମଚାରୀ, ମୁଁ ଗୃହସ୍ଥ, ମୁଁ ବି ବାନପ୍ରସ୍ଥ, ମୁଁ ବି ସନ୍ନ୍ୟାସୀ ।

ବ୍ୟବହାରିକ ଜଗତରେ ଓ ସାମାଜିକ ମର୍ଯ୍ୟାଦା ଦୃଷ୍ଟିରୁ ତ ଠିକ୍ କିନ୍ତୁ ପରମାତ୍ମା ପ୍ରାପ୍ତିରେ ଏ ସବୁ କ୍ଷତିକାରକ ଓ ବାଧାଦାୟକ । କାରଣ ପରମାତ୍ମାଙ୍କର ଆଶୀର୍ବାଦ ଶରୀରକୁ ହୁଏ ନାହିଁ ବରଂ ସାଧନାକୁ ବା ଆତ୍ମାକୁ ହୁଏ । ତୁମେ ନିଜକୁ ଜଣେ ସାଧକ ହିସାବରେ ପରିଗଣିତ କର ଦେଖିବ ତୁମର ସବୁ ଦୁଃଖ ଚିନ୍ତା ଆପେ ଆପେ ଦୂରେଇ ଯିବ । ତୁମେ ହୋଇଯିବ

ଜଣେ ସିଦ୍ଧପୁରୁଷ । ଜଗତ, ଜୀବ ଓ ପରମାତ୍ମା ହିଁ ସମଗ୍ର ବ୍ରହ୍ମାଣ୍ଡରେ ତିନୋଟି ସାରତତ୍ତ୍ୱ, ଯଥା ପରା, ଅପରା ଓ ଭଗବାନ, କ୍ଷର ଅକ୍ଷର ଓ ପୁରୁଷୋତ୍ତମ । ପ୍ରଥମରେ ମୁକ୍ତି ମିଳୁ ଦ୍ୱିତୀୟରେ ଦୁଃଖ ନିବୃତି ହେଉ ଓ ତୃତୀୟରେ ପରମ ପ୍ରେମ ଲାଭ ହେଉ । ମୁକ୍ତିର ଇଚ୍ଛା ଜ୍ଞାନ ଯୋଗ ଦ୍ୱାରା, ଦୁଃଖ ନିବୃତିର ଇଚ୍ଛା କର୍ମଯୋଗ ଦ୍ୱାରା ଓ ପରମ ପ୍ରେମ ପ୍ରାପ୍ତିର ଇଚ୍ଛା ଭକ୍ତିଯୋଗ ଦ୍ୱାରା ପୂରଣ ହୋଇଥାଏ । କିନ୍ତୁ ଯଦି ସାଧକଠାରେ ନିଜ ସାଧନା ପ୍ରତି ଦୁରାଗ୍ରହ ଭାବନା ନ ଥିବ ତାହାହେଲେ ଗୋଟିଏ ଇଚ୍ଛା ପୂରଣ ହେବା ଦ୍ୱାରା ତିନୋଟି ଯାକ ଇଚ୍ଛା ପୂର୍ଣ୍ଣ ହୋଇଯିବ ଏହାଦ୍ୱାରା ଆତ୍ମସନ୍ତୋଷ ପ୍ରାପ୍ତି ହେବ । ତେଣୁ ପରମାତ୍ମା ସହିତ ଆତ୍ମୀୟତା ପ୍ରକାଶ କରିବା ବିଧେୟ । ଆତ୍ମୀୟତା ଅର୍ଥାତ ଶରଣାଗତ ହୋଇଯିବା ଆବଶ୍ୟକ । ପରମାତ୍ମା କିପରି ଅଟନ୍ତି ବା କିପରି ନୁହଁନ୍ତି ଏହା ଜାଣିବା ଆବଶ୍ୟକ ନାହିଁ । ସାଧକ କେବଳ ଏତିକି ମାନିବା ଉଚିତ ଯେ ପରମାତ୍ମା ଅଛନ୍ତି ଓ ସେ ମୋର, ମୁଁ ତାଙ୍କର ।

ପରମାତ୍ମା ବିଚାର ବା ତର୍କର ବିଷୟ ନୁହଁନ୍ତି । ତାଙ୍କୁ କେବଳ ଶ୍ରଦ୍ଧା ଓ ବିଶ୍ୱାସର ସହ ମାନିବାକୁ ହୁଏ । ତାଙ୍କୁ ମାନିବା ବା ନ ମାନିବାରେ ସ୍ୱାର୍ଥପର ମନୁଷ୍ୟର ପୂର୍ଣ୍ଣ ସ୍ୱାଧୀନ । କିନ୍ତୁ କିଏ ସେ ଜଣେ ଅଛନ୍ତି ଏମିତି ଭାବି ମନକୁ ଆଣିବା ଉଚିତ୍ । ଈଶ୍ୱରଙ୍କୁ ଆମେ ଆଦୌ ଜାଣି ପାରିବା ନାହିଁ କିନ୍ତୁ ନ ମାନି ରହି ପାରିବା ନାହିଁ । ମାତାପିତାଙ୍କୁ ଆମେ ଜାଣୁ ତାଙ୍କ ବିଷୟରେ ଆମେ ଜାଣି ବି ଅଜଣା ଥାଉ । କାରଣ ସେ ତ' ପ୍ରକୃତି ଦେବୀ ଦେବତା ବୋଲି ଆମେ ଅନୁଭବ କରିବା ଉଚିତ୍ । ସେ ନ ଥିଲେ ଆମର ଶରୀରର ସତ୍ତା ନ ଥାନ୍ତା । ଆମର ଗର୍ବ ଅହଂକାର ଏତେ ବଢି ନ ଥାନ୍ତା । ଈଶ୍ୱରଙ୍କର ସତ୍ତାକୁ ନିଶ୍ଚିତ ଭାବରେ ମାନିବାକୁ ପଡିବ । ଆମକୁ ବୁଝିବାକୁ ହେବ ଆମେ ଅଛୁ । ତେଣୁ କେହି ମାତା ଓ ପିତା ନିଶ୍ଚିତ ଅଛନ୍ତି । ମାତା ପିତା ଅଛନ୍ତି ଆମେ ଅଛୁ ଈଶ୍ୱର ବି ଅଛନ୍ତି । କୌଣସି ବ୍ୟକ୍ତି ନିଜ ଅସ୍ତିତ୍ୱକୁ ଅସ୍ୱୀକାର କରି ଏପରି କହି ପାରିବନି ଯେ ମୁଁ ନାହିଁ । ଯଦି ଆମ ଅସ୍ତିତ୍ୱକୁ ମଧ୍ୟ ଅସ୍ୱୀକାର କରାଯାଇ ପାରୁନାହିଁ, ତା' ହେଲେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଭଗବାନଙ୍କୁ ଦୃଢ ଭାବରେ ମାନିଲେ ତାଙ୍କ ପ୍ରତି ଆତ୍ମୀୟତା ହୋଇଯାଏ ଏବଂ ଆତ୍ମୀୟତା ହେଲେ ଈଶ୍ୱରଙ୍କ ପ୍ରତି ପ୍ରେମଭାବ ଜାଗ୍ରତ ହୁଏ ।

---

ଶ୍ରୀରାମନଗର, ମଧୁପାଟଣା, କଟକ-୧୦



# ନେତାଜୀ ସୁଭାଷଚନ୍ଦ୍ର ବୋଷ

ଅହଲ୍ୟା ମହାପାତ୍ର

ସୁଭାଷଚନ୍ଦ୍ର ବୋଷ ଦୀପ୍ୟମାନ ଏକ ଜୀବନ୍ତ ଜୀବନର ପ୍ରତୀକ । ପୃଥିବୀରେ ଅନେକ ନେତା ଥିଲେ, ଅଛନ୍ତି ଓ ଆସିବେ। ନେତାଜୀ କିନ୍ତୁ ଜଣେ। ମାନବ ଜାତିର ମର୍ମବୋଧକ ଗ୍ରାହକ ନେତାଜୀ ସୁଭାଷ ଚନ୍ଦ୍ର ବୋଷ। ସମଗ୍ର ବିଶ୍ୱ ମୁକ୍ତି ସ୍ୱାଧୀନତାର ସୁଫଳ ଲାଭ କରନ୍ତୁ। କେହି କାହାର ଅଧୀନ ହୋଇ ନ ରହୁ। ଏପରି କ୍ରାନ୍ତି ଚିନ୍ତାରେ ସେ ଥିଲେ ଅଗ୍ରଣୀ ମର୍ଯ୍ୟାଦାବନ୍ତ ସୁପୁରୁଷ। ଦେଶବଂଧୁ ଚିତ୍ତରଂଜନ ଦାସ, ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ତାଙ୍କୁ ଅତି ଶ୍ରଦ୍ଧା କରୁଥିଲେ। ତାଙ୍କ ଗଠିତ ସୈନ୍ୟବାହିନୀର ନାମ ଆଜାଦ୍ ହିନ୍ଦ୍ ଫୌଜ। ତାଙ୍କ ଆତ୍ମଜୀବନୀ ପୁସ୍ତକଟି ଯଦି ଭାରତବର୍ଷର ଲୋକେ ପଢ଼ିବାକୁ ପାଇଥାନ୍ତେ, ତେବେ ସେତେବେଳେ ଏହାର ପ୍ରଭାବରେ ପରିସ୍ଥିତି ଭିନ୍ନ ହୋଇଥାନ୍ତା।



ସୁଭାଷଚନ୍ଦ୍ରଙ୍କର ଆତ୍ମଜୀବନୀଟି ଇଂଲଣ୍ଡର ସମ୍ବାଦପତ୍ର ଏବଂ ଇଉରୋପର ରାଜନୀତିଜ୍ଞ ଓ ବିଶିଷ୍ଟ ବ୍ୟକ୍ତିଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା। ମାଞ୍ଚେଷ୍ଟର ଗାଡ଼ିୟନ୍, ସଣ୍ଡେ ଟାଇମ୍ସ, ଡେଲି ହେରାଲ୍ଡ ଏବଂ ନିଉଜ୍ କ୍ରିନିକାଲ ପ୍ରଭୃତି ଇଂଲଣ୍ଡର ନାମୀ ଦାମୀ ଦୈନିକ ପତ୍ରିକାରେ ଛପା ଯାଇଥିଲା। ସେମାନେ ଲେଖିଥିଲେ କି ଏହା ଏକ ଦକ୍ଷ, ନିରପେକ୍ଷ, ବିଜ୍ଞ ବ୍ୟକ୍ତିଙ୍କର ସାଧନାର ଫଳ। ଫ୍ରାନ୍ସର ବିଶିଷ୍ଟ ମନୀଷୀ ନୋବେଲ ପୁରସ୍କାରପ୍ରାପ୍ତ ରୋମାଁରୋଲା ଏହି ପୁସ୍ତକଟି ଅଧ୍ୟୟନ କରି ଉଚ୍ଚ ମନ୍ତବ୍ୟ ଦେଇଥିଲେ। ଏଥିରେ ଜଣେ ଐତିହାସିକଙ୍କ ଅସାଧାରଣ ଯୋଗ୍ୟତା, ମାନସିକ ଦକ୍ଷତା ପ୍ରଦର୍ଶିତ ହୋଇଛି ବୋଲି ସେ ମତ ଦେଇଥିଲେ। ରୋମ୍‌ଠାରେ ସୁଭାଷଚନ୍ଦ୍ର ମୁସୋଲିନିଙ୍କୁ ନିଜେ ଯାଇ ପୁସ୍ତକଟିକୁ ଉପହାର ଦେଇଥିଲେ। ଏଇ ପୁସ୍ତକର ପ୍ରଭାବରେ ମୁସୋଲିନ୍ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପ୍ରତି ସହାନୁଭୂତିଶୀଳ ହୋଇଥିଲେ।

ଇଉରୋପରେ ଭ୍ରମଣକାଳରେ ସୁଭାଷଚନ୍ଦ୍ର ସୁଇଜରଲ୍ୟାଣ୍ଡ ଯାଇଥିଲେ। ସେ ଜେନେଭାଠାରେ ପ୍ରତିଷ୍ଠିତ ଜାତିସଂଘ ଅଫିସରେ ଭାରତର ସ୍ୱାଧୀନତା ପ୍ରସଙ୍ଗ ଉଠାଇଥିଲେ। ଆମ ଦେଶ ପରାଧୀନ ଥିବା ଯୋଗୁଁ ତାଙ୍କର ପ୍ରସଙ୍ଗକୁ କର୍ମକର୍ତ୍ତାମାନେ ଏଡ଼ାଇ ଦେଇଥିଲେ।

ସୁଭାଷଚନ୍ଦ୍ରଙ୍କୁ ଗୁଜୁରାଟର ହରିପୁର କଂଗ୍ରେସ ଅଧିବେଶନରେ ସଭାପତି ଆସନରେ ଉଚ୍ଚ ସମ୍ମାନ ପ୍ରଦର୍ଶନ କରାଯାଇଥିଲା। କଂଗ୍ରେସର ସଭାପତି ଭାବରେ ସେ ଯେଉଁ ଭାଷଣ ଦେଇଥିଲେ, ତାହା ଦେଶ ପକ୍ଷେ ଅତି ମୂଲ୍ୟବାନ୍। ସେ ଘୋଷଣା କରିଥିଲେ ଯେ ଆମର ଜାତୀୟ ସମସ୍ୟା ଭିତରୁ ଦାରିଦ୍ର୍ୟ ଦୂରୀକରଣ, ନିରକ୍ଷରତା ଦୂରୀକରଣ, ସ୍ୱାସ୍ଥ୍ୟରକ୍ଷା ଓ ବୈଜ୍ଞାନିକ ଉପାୟରେ ଉତ୍ପାଦନ ଓ ବଣ୍ଟନକୁ ଅଗ୍ରାଧିକାର ଦିଆଯିବ। ସମାଜବାଦ ଢାଞ୍ଚାରେ ଏହା କରାଯିବ। ଆମ ଦେଶର ଜାତୀୟ ସରକାର ଏକ ଯୋଜନା କମିଶନ

ଗଠନ କରିବେ। ତୁରନ୍ତ କାର୍ଯ୍ୟକ୍ରମ ତଥା ଦୀର୍ଘସ୍ଥାୟୀ ଯୋଜନାମାନ ପ୍ରସ୍ତୁତ କରିବାକୁ ହେବ। ସ୍ଥାନୀୟ ସାଂସ୍କୃତିକ ସ୍ୱତନ୍ତ୍ରତା ରକ୍ଷା କରିବାକୁ ହେବ। ଆମର ଜାତୀୟ ଐକ୍ୟ ପ୍ରତିଷ୍ଠା ପାଇଁ ସେ ରୋମାନ୍ ଲିପି ବ୍ୟବହାରର ପରାମର୍ଶ ଦେଇଥିଲେ। ସେ ବୃହତ୍ ଶିଳ୍ପ, ମଧ୍ୟମ, କ୍ଷୁଦ୍ରଶିଳ୍ପ ସହ କୁଟୀରଶିଳ୍ପର ସମନ୍ୱୟ ରକ୍ଷା ପାଇଁ ମତ ଦେଇଥିଲେ।

ସୁଭାଷଚନ୍ଦ୍ର ବୋଷ ଅମଲାତନ୍ତ୍ରର ଗଠନ ଓ ଚରିତ୍ରକୁ ପରିବର୍ତ୍ତନ କରିବା ପାଇଁ ଉଦ୍ଦେଶ୍ୟ ଥିଲା ଅମଲାତନ୍ତ୍ର ମହତ ନୀତି ଓ ଆଦର୍ଶକୁ କାର୍ଯ୍ୟକାରୀ କରୁ। ଶିକ୍ଷା-ସ୍ୱାସ୍ଥ୍ୟ-ଜଳସେଚନ-କୁସଂସ୍କାର ଦୂରୀକରଣ-ନିଶା ନିବାରଣ ପାଇଁ ବିଶେଷ ଗୁରୁତ୍ୱ ଆରୋପ କରିବା ନିମନ୍ତେ ତାଙ୍କର ଉତ୍ସାହ ଥିଲା। ସେ କହୁଥିଲେ ଭାରତ ସ୍ୱାଧୀନ ହେଲେ ମାନବଜାତି ଉଦ୍ଧାର ହେବ। ଆମର ବ୍ରିଟିଶ ବିରୋଧରେ ସଂଗ୍ରାମ ହେଲା ବିଶ୍ୱ ସାମ୍ରାଜ୍ୟବାଦ ବିରୋଧରେ ସଂଗ୍ରାମ। କାରଣ ସେତେବେଳେ ବ୍ରିଟିଶଜାତିର ସାମ୍ରାଜ୍ୟବାଦୀ ନୀତି ଅସହ୍ୟ ହୋଇ ପଡ଼ିଥିଲା।

କାରାବାସ ଓ ନଜରବନ୍ଧନକୁ ଏଡ଼ାଇ ସୁଭାଷଚନ୍ଦ୍ର ପେଶୱାର, କାବୁଲ, ସମରକନ୍ଦ ଓ ମସ୍କୋ ବାଟ ଦେଇ ଜର୍ମାନୀରେ ପହଂଚିଲେ। ସେଠାରେ ସେ ମୁକ୍ତଭାରତ କେନ୍ଦ୍ର (Free India Centre) ସ୍ଥାପନ କଲେ। ସେଠାରେ ତ୍ରିରଙ୍ଗା ପତାକା ଉଡ଼ିଲା। ଜନ-ଗଣ-ମନ- ଅଧିନାୟକ ଜୟ ହେ ଥିଲା ତାଙ୍କର ଜାତୀୟ ସଂଗୀତ। ଏଇଠି କର୍ମୀମାନେ ଅତି ଆଦରରେ ସୁଭାଷଚନ୍ଦ୍ରଙ୍କୁ 'ନେତାଜୀ' ସଂବୋଧନ କଲେ। ଜାପାନ ସରକାରଙ୍କ ସହାୟତାରେ ସେ 'ଆଜାଦ ହିନ୍ଦ ଫଉଜ' ଗଠନ କଲେ। ଏହାକୁ ଭାରତୀୟ ଜାତୀୟ ସୈନ୍ୟବାହିନୀ (Indian National Army = INA) କୁହାଯାଏ। ଏହାର ପ୍ରଧାନ ସେନାଧକ୍ଷ ହେଲେ ସ୍ୱୟଂ ନେତାଜୀ। ସେତେବେଳେ ଏହାର ଲୋକଶକ୍ତି, ଅର୍ଥ, ଆବଶ୍ୟକ ସାମଗ୍ରୀ ସଂଗ୍ରହ ନିମନ୍ତେ ଅଭିଯାନ ରହିଥାଏ। ଏସିଆସ୍ଥିତ ଭାରତୀୟମାନେ ପୂର୍ଣ୍ଣ ପ୍ରାଣରେ ନେତାଜୀଙ୍କୁ ସାହାଯ୍ୟ କଲେ। ସେ ଆଣ୍ଡାମାନ ଦ୍ୱୀପର ନାମ ରଖିଲେ 'ସହିଦ'। ନିକୋବର ଦ୍ୱୀପର ନାମ ରଖିଲେ 'ସ୍ୱରାଜ'। ସେଠାକାର ଜିମ୍‌ଖାନା ପଡ଼ିଆରେ ସେ ବିରାଟ ଜନସମାବେଶରେ ଜାତୀୟ ପତାକା ଉଡ଼ାଇଥିଲେ। ସେ ରେଙ୍ଗୁନଠାରେ ଆଜାଦ ହିନ୍ଦ୍ ବ୍ୟାଙ୍କ ପ୍ରତିଷ୍ଠା କରିଥିଲେ। ମୁଦ୍ରା, ନୋଟ୍, ଷ୍ଟାମ୍ପ ମଧ୍ୟ ପ୍ରଚଳନର ବ୍ୟବସ୍ଥା ମଧ୍ୟ ସେ କଲେ। ଏବେ ଏ ସବୁର ପ୍ରମାଣ କଟକସ୍ଥିତ ନେତାଜୀଙ୍କ ଜନ୍ମସ୍ଥାନ ଯାଦୁଘରେ ଉପଲବ୍‌ଧ।

ନେତାଜୀଙ୍କର 'ଦିଲ୍ଲୀ ଚଲୋ' ଆହ୍ୱାନ କ୍ରମେ ଆଜାଦ ହିନ୍ଦ୍ ଫୌଜ ମଣିପୁରର ରାଜଧାନୀ ଇଂଫାଲ ନିକଟବର୍ତ୍ତୀ ମଏରାଙ୍ଗ ସହରକୁ ଦଖଲ କଲେ। ସେଠାରେ ତ୍ରିରଙ୍ଗା ପତାକା ଉଡ଼ିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ଅବସ୍ଥାରେ ନେତାଜୀ ନିଖୋଜ ହେଲେ। ବିମାନ ଦୁର୍ଘଟଣା ମଧ୍ୟ ଘଟିଥିଲା।

ସୁଭାଷଚନ୍ଦ୍ର ବୋଷ ସେପରି ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଥିଲେ ଯେ କି କାରାଗାରରେ ଥାଇ ବି କଲିକତା ମହାନଗରର ମେୟର ନିର୍ବାଚିତ ହୋଇଥିଲେ। ସେ ହଲଓୟେଲ ସ୍ମୃତି ସ୍ତମ୍ଭ ଉଠାଇନେବା ପାଇଁ ଆନ୍ଦୋଳନର ନେତୃତ୍ୱ ନେଇ କଲିକତାର ପ୍ରେସିଡ଼େନ୍‌ସି ଜେଲଖାନାରେ ଥାଇ ବି ଢାକା ନିର୍ବାଚନ ମଣ୍ଡଳୀରୁ କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ। ସେ ଏଭଳି ମହାନ୍ ଥିଲେ ଯାହାଙ୍କୁ ଜାପାନ ସରକାର ତାଙ୍କ ଦେଶର ସର୍ବୋଚ୍ଚ ଶ୍ରେଷ୍ଠ ବେସାମରିକ ଉପାଧିରେ ଭୂଷିତ କରିବାକୁ ଚାହିଁଥିଲେ। 'ଭାରତକୁ ସ୍ୱାଧୀନ କରିବା ପରେ ତାହା ହୋଇପାରେ, ଦେଶ ସ୍ୱାଧୀନତା ପୂର୍ବରୁ ନୁହେଁ' - ଏପରି ମତ ଦେଇଥିଲେ ନେତାଜୀ। ସେ ହିଁ ନେତାଜୀ ଯେ କି ସକଳ ଜାତିଭେଦ ଉଠାଇ ଦେବା ପାଇଁ କଲିକତା ମହାନଗରରେ 'ମହାଜାତି ସଦନ' ଗଢ଼ାଇ ଥିଲେ। ତାଙ୍କର ତ୍ୟାଗ, ସାହସ, ମହନୀୟତାକୁ କାଳେ କାଳେ ଲୋକେ ମନେ ପକାଉଛନ୍ତି ଓ ସ୍ମରଣ କରୁଛନ୍ତି ମଧ୍ୟ।

---

ପ୍ରଧାନ ଶିକ୍ଷୟିତ୍ରୀ
ବନ୍ତଳା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ
କୁରୁଜଙ୍ଗା, ଚାନ୍ଦୋଳ, କଟକ

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସ୍ୱପ୍ନ ଓ ବାସ୍ତବତା

**ସୁରେଶ କୁମାର ପ୍ରଧାନ**

ଭାରତବର୍ଷର ଏକ ଗୌରବ ବିମଣ୍ଡିତ ଓ ଐଶ୍ୱର୍ଯ୍ୟଶାଳୀ ଭୂଖଣ୍ଡ ଭାବରେ ଓଡ଼ିଶା ପ୍ରାଚୀନ କାଳରୁ ମହିମାବନ୍ତ । ଐତିହ୍ୟ ଓ ସଂସ୍କୃତିସମ୍ପନ୍ନ ଓଡ଼ିଶା ଭୂମି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରି ସ୍ୱତନ୍ତ୍ର ଔଜ୍ଜ୍ୱଲ୍ୟରେ ଉଦ୍‌ଭାସିତ ହୋଇଉଠିଥିଲା । ପୂର୍ବେ ଓଡ଼ିଶା କହିଲେ କଳିଙ୍ଗ, ଉତ୍କଳ, ଓଡ୍ର, କୋଶଳ, ତୋଷାଳି ଓ କଙ୍ଗୋଦ ଆଦି ନାମରେ ଥିଲା ମହିମାନ୍ୱିତ । ସମୟକ୍ରମେ ଅତୀତର ଓଡ୍ର ବା ଓଡ୍ରଦେଶରୁ ଆଜିର ଓଡ଼ିଶା ନାମ ସୃଷ୍ଟି ବୋଲି ଜାଣିହୁଏ । ଖ୍ରୀଷ୍ଟିୟ ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶ ଶାସନ ସମୟରେ ୧୧୧୦ ଠାରୁ ୧୪୩୪ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ରାଜନୀତିକ ମିଶ୍ରଣର ଫଳସ୍ୱରୂପ ବୃହତ୍ ଓଡ଼ିଶା ରାଜ୍ୟର ଆତ୍ମପ୍ରକାଶ ଘଟିଥିଲା । ଓଡ଼ିଶାର ନରପତିମାନେ ବିଶାଳ ଓଡ଼ିଶା ରାଜ୍ୟର ଶାସକ ରୂପେ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଏକ ଶ୍ରେଷ୍ଠ ସାଂସ୍କୃତିକ ସୁସମନ୍ୱୟ ସୃଷ୍ଟି କରି ଓଡ଼ିଶାର ବିଜୟ ବୈଜୟନ୍ତୀ ଉଡ଼ାଇବାରେ ସମର୍ଥ ହୋଇଥିଲେ ।

ସ୍ୱର୍ଣ୍ଣପ୍ରସୂ ଉତ୍କଳ ଯୁଗେ ଯୁଗେ ବାହ୍ୟ ଆକ୍ରମଣ ଦ୍ୱାରା ଉତ୍ପୀଡ଼ିତ ହୋଇ ଧୀରେ ଧୀରେ ପରାଧୀନତାର ଶୃଙ୍ଖଳକୁ ଆପଣାଇବା ଥିଲା ଓଡ଼ିଆ ଜାତି ନିକଟରେ ଅସହ୍ୟ । ସମଗ୍ର ଭାରତରେ ଯେତେବେଳେ ମୁସଲମାନ ଶାସନ ଚାଲିଥିଲା, ତତ୍କାଳେ ଓଡ଼ିଶାରେ ହିନ୍ଦୁ ନରପତିମାନେ ରାଜତ୍ୱ କରୁଥିଲେ । ସୂର୍ଯ୍ୟବଂଶୀ ଗଜପତିମାନେ ପ୍ରାୟ ଖ୍ରୀ.୧୪୩୫ରୁ ୧୫୫୦ ପର୍ଯ୍ୟନ୍ତ ଓଡ଼ିଶାରେ ସୁବର୍ଣ୍ଣ ଯୁଗ ପ୍ରତିଷ୍ଠା କରିଥିଲେ । ଚକ ଘୂରିଲା ଭଳି ପରେ ପରେ ଦାରୁଣ ବିପର୍ଯ୍ୟୟ ଘଟିଥିଲା ଓଡ଼ିଶାର ଭାଗ୍ୟାକାଶରେ । ଖ୍ରୀ. ୧୫୬୮ରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ଗଜପତି ମୁକୁନ୍ଦ ଦେବ ଶତ୍ରୁ କବଳରେ ପଡ଼ି ନିହତ ହେବା ପରେ ସ୍ୱାଧୀନତାର ରବି ଅସ୍ତମିତ ହେଲା ଓଡ଼ିଶା ଆକାଶରୁ । ସବୁଦିନ ପାଇଁ ଆଫଗାନମାନେ ଓଡ଼ିଶାକୁ କରାୟତ କରି ଶାସନ ପ୍ରତିଷ୍ଠା କଲେ । ୧୫୬୮ ଠାରୁ ୧୮୦୩ ପର୍ଯ୍ୟାନ୍ତ ପ୍ରାୟ ଦୀର୍ଘ ଅଢ଼େଇଶହ ବର୍ଷ ଓଡ଼ିଶାର ଅତୀତ ଥିଲା ଅନ୍ଧକାରମୟ । ପରେପରେ ୧୮୦୩ରେ ଓଡ଼ିଶା ହେଲା ଇଂରେଜ ଶାସନାଧୀନ । କୁଚକ୍ରୀ ବ୍ରିଟିଶମାନଙ୍କ ଅଧୀନକୁ ଚାଲିଯିବା ଫଳରେ ଓଡ଼ିଶାର ଗୌରବମୟ ଐତିହ୍ୟ ସବୁଦିନ ପାଇଁ ମାଟିରେ ମିଶିଗଲା । କେବଳ ଏତିକି ଓଡ଼ିଆଙ୍କ ଭାଗ୍ୟରେ ନଥିଲା, ଇଂରେଜମାନେ ଓଡ଼ିଶାକୁ ଭାଗଭାଗ କରିବାକୁ ପଛାଇ ନଥିଲେ । ଓଡ଼ିଆଙ୍କ ବୀରତ୍ୱରେ ଭୟଭୀତ ହୋଇ ଓଡ଼ିଶାକୁ ଖଣ୍ଡବିଖଣ୍ଡିତ କରି ପଡ଼ୋଶୀ ପ୍ରଦେଶମାନଙ୍କରେ ମିଶାଇ ଦେଲେ । ଫଳରେ ଓଡ଼ିଆଙ୍କ ପରିଚୟ, ସଂସ୍କୃତି ଓ ଭାଷା ନଷ୍ଟଭ୍ରଷ୍ଟ ହୋଇ ଓଡ଼ିଆ ଜାତି ହୀନବଳ ହୋଇପଡ଼ିଲା । ଇଂରେଜମାନଙ୍କ ଉତ୍ପୀଡ଼ନ ସାଙ୍ଗକୁ ୧୮୬୬ରେ ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶାରେ କଳାକନା ବୁଲାଇ ଦେଲା । ଅନାହାରରେ ଅକାଳରେ ଝଡ଼ିପଡ଼ିଲା ଅନେକ ଜୀବନ । ନ'ଅଙ୍କ ଦୁର୍ଭିକ୍ଷ ଭଳି ଦାରୁଣ ବିପର୍ଯ୍ୟୟ ହଟିଯିବା ପରେ ଓଡ଼ିଶାକୁ ଫେରିଲା ସୁଦିନ । ଖଣ୍ଡବିଖଣ୍ଡିତ ଓଡ଼ିଶାର ଏହି ଦାରୁଣ ଦୁଃସ୍ଥିତି କ୍ରମେ ସ୍ୱାଭିମାନୀ ଓଡ଼ିଆଙ୍କୁ ପ୍ରଚଣ୍ଡ ଆଘାତ ଦେଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାର ବିକ୍ଷିପ୍ତ ତଥା ବିଖଣ୍ଡିତ ଭୂମିକୁ ଏକତ୍ରୀକରଣ ନିମନ୍ତେ ନିଷ୍ଠାର ସହ ପ୍ରଚେଷ୍ଟା ଆରମ୍ଭ ହୋଇଗଲା । ଛିନ୍ନମସ୍ତା ଉତ୍କଳଜନନୀଙ୍କୁ ପୂର୍ଣ୍ଣାଙ୍ଗ ରୂପ ପ୍ରଦାନ କରିବାରେ ଉତ୍କଳଜନନୀଙ୍କ ସୁଯୋଗ୍ୟ ସନ୍ତାନମାନଙ୍କ ଅବଦାନ

ଥିଲା ଅବିସ୍ମରଣୀୟ । ସ୍ମରଣୀୟ ବରପୁତ୍ର ତଥା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅଗ୍ରନାୟକ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସଂପୃକ୍ତି ଥିଲା ମଣିକାଞ୍ଚନ ସଂଯୋଗ । ଯାହାଙ୍କ ଉଦ୍ୟମ ଓ ଆନ୍ତରିକତାର ଫଳସ୍ୱରୂପ କଟକଠାରେ 'ଉତ୍କଳ ସଭା' ଗଠିତ ହୋଇଥିଲା । ବୋଧହୁଏ ଏହାହିଁ ଥିଲା ଓଡ଼ିଶାର ସର୍ବପ୍ରଥମ ସୁସଙ୍ଗଠିତ ରାଜନୈତିକ ଅନୁଷ୍ଠାନ । ଏହାର ସର୍ବପ୍ରଥମ ସଭାପତି ହେଲେ କାଶୀନାଥ ଦାସ ଓ ପ୍ରଥମ ସମ୍ପାଦକ ହେଲେ ଗୌରୀଶଙ୍କର ରାୟ । ପରେ ପରେ ଉତ୍କଳର ବରପୁତ୍ରମାନେ ସାମିଲ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ଜୀବନକୁ ଉତ୍ସର୍ଗ କଲେ ।

ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଉଦ୍ୟମ ଓ 'ଉତ୍କଳ ସଭା' ଆନୁକୂଲ୍ୟରେ ୧୯୦୩ ମସିହାରେ କଟକଠାରେ ଏକ ସଭା ଆହ୍ୱାନ କରାଗଲା, ଉଦ୍ଦେଶ୍ୟ ଥିଲା ବିଖଣ୍ଡିତ ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ । ଯେଉଁ ନୂତନ ଜାତୀୟ ଅନୁଷ୍ଠାନଟି ଆତ୍ମପ୍ରକାଶ କଲା, ତା'ର ନାମ 'ଉତ୍କଳ ସମ୍ମିଳନୀ' । ଏହି ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ ମଧୁବାବୁ ତାଙ୍କ ମାଟି ପ୍ରତି ଥିବା ଜାତୀୟ କର୍ତ୍ତବ୍ୟକୁ ସମ୍ପାଦନ କରିଥିଲେ । ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ କଟକଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଧୀରେ ଧୀରେ ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନମାନେ ନିଜ କର୍ତ୍ତବ୍ୟରେ ସଚେତନ ହୋଇ ଆଗେଇ ଆସିଲେ, ଫଳରେ ଉତ୍କଳ ଜନନୀର ପୂର୍ଣ୍ଣାଙ୍ଗ ରୂପ ପରିଗ୍ରହ ନିମିତ୍ତ ମାର୍ଗ ଉନ୍ମୁକ୍ତ ହେଲା । ୧୯୦୫ ଜୁଲାଇ ୧୯ରେ ସମ୍ବଲପୁର କେନ୍ଦ୍ରୀୟ ପ୍ରଦେଶରୁ ଆସି ଓଡ଼ିଶା ଡିଭିଜନ୍ ସହ ମିଶିଲା । ଏହା ହିଁ ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରଥମ ସଫଳତା ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅଗ୍ରନାୟକ ଓ ଓଡ଼ିଆ ପ୍ରାଣ ମଧୁବାବୁଙ୍କ ଜାତୀୟତା ଥିଲା ଓଡ଼ିଆଙ୍କ ପାଇଁ ପ୍ରେରଣାର ଉତ୍ସ । ମଧୁବାବୁ ୧୯୦୭ରେ ଇଂଲଣ୍ଡ ଗସ୍ତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦାବି ଉପସ୍ଥାପନ କଲେ । ଧୀରେ ଧୀରେ ସ୍ୱତନ୍ତ୍ର ଓଡ଼ିଶା ଗଠନର ଆନ୍ଦୋଳନ ତୀବ୍ରତର ହେଲା । ୧୯୧୧ରେ ଖଲ୍ଲିକୋଟରେ ଓଡ଼ିଶା ସହିତ ଗଞ୍ଜାମ ମିଶ୍ରଣ ନିମନ୍ତେ ଆନ୍ଦୋଳନ ଆରମ୍ଭ ହେଲା ।

୧୯୧୭ ମସିହାରେ ଭାରତ ସଚିବ ଇ.ଏସ୍.ମଂଟେଗୁ ଭାରତରେ ସ୍ୱାୟତ ଶାସନ ସମ୍ବନ୍ଧରେ ଆଲୋଚନା ପାଇଁ ଚେମସ୍ ଫୋର୍ଡ଼ଙ୍କ ସହ ଭାରତ ଆଗମନ ବେଳେ ମଧୁବାବୁ ସାତଜଣ ସଦସ୍ୟଙ୍କୁ ନେଇ 'ଉତ୍କଳ ସମ୍ମିଳନୀ' ପକ୍ଷରୁ କଲିକତାଠାରେ ମଂଟେଗୁ ଓ ଚେମସ୍ ଫୋର୍ଡ଼ଙ୍କୁ ସାକ୍ଷାତ କରି ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ସମ୍ବନ୍ଧରେ ଦାବିପତ୍ର ପ୍ରଦାନ କଲେ । ପରେପରେ ୧୯୨୧ରେ ବିହାର-ଓଡ଼ିଶା ବିଧାନ ପରିଷଦର ସଦସ୍ୟ ବିଶ୍ୱନାଥ କର ଏବଂ ମାନ୍ଦ୍ରାଜ ବିଧାନ ପରିଷଦର ସଭ୍ୟ ଶଶିଭୂଷଣ ରଥ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣକୁ ଦୋହରାଇ ଥିଲେ ।

୧୯୩୦ ନଭେମ୍ବର ୧୨ରୁ ୧୯୩୧ ଜାନୁଆରୀ ୧୯ ପର୍ଯ୍ୟନ୍ତ ଲଣ୍ଡନଠାରେ ଅନୁଷ୍ଠିତ ହେଉଥାଏ ପ୍ରଥମ ଗୋଲଟେବୁଲ୍ ବୈଠକ । ଓଡ଼ିଆମାନଙ୍କ ପ୍ରତିନିଧି ରୂପେ ଯୋଗଦେଲେ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ଉକ୍ତ ବୈଠକରେ ମହାରାଜା 'ଓଡ଼ିଆଙ୍କ ଦାବି ଓ ଯୁକ୍ତି' ନାମକ ପ୍ରଦାନ କଲେ । ୧୯୩୧ ମାର୍ଚ୍ଚ ୨୯ରେ କରାଚୀଠାରେ ଜାତୀୟ କଂଗ୍ରେସର ଅଧିବେଶନ ଓଡ଼ିଶା ପ୍ରସଙ୍ଗ ଆଲୋଚନା ପରିସରଭୁକ୍ତ ହେଲା । ଓଡ଼ିଆ ପ୍ରତିନିଧି ଦଳ ସ୍ୱତନ୍ତ୍ର ଓଡ଼ିଶା ଗଠନ ଦାବି ସମ୍ପର୍କରେ ମହାତ୍ମା ଗାନ୍ଧୀଙ୍କୁ ଅବଗତ କରାଇଲେ । ବିଭିନ୍ନ ସମୟରେ ଆନ୍ଦୋଳନ ଓ ଦାବିପତ୍ର ପ୍ରଦାନର ଫଳସ୍ୱରୂପ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ମାର୍ଗ ଉନ୍ମୋଚିତ ସମ୍ଭବ ହେଲା । ୧୯୩୧ ମସିହା ସେପ୍ଟେମ୍ବର ୧୩ରେ ଭାରତ ସରକାର ତିନି ସଦସ୍ୟ ବିଶିଷ୍ଟ ସୀମା ନିର୍ଦ୍ଧାରଣ କମିଟି ଗଠନ କଲେ । ଧୀରେ ଧୀରେ ବିଭିନ୍ନ ଘାତ ପ୍ରତିଘାତ ଓ ବାଧା ବନ୍ଧନକୁ ଏଡ଼ାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ରାସ୍ତା ସୁଗମ ହେବାରେ ଲାଗିଲା ।

୧୯୩୨ ମସିହା ଓଡ଼ିଆମାନଙ୍କ ପାଇଁ ଏକ ସ୍ମରଣୀୟ ଦିନ । ଭାରତ ସଚିବ ସାମୁଏଲ୍ ହୋର୍ ଭାରତ ପାଇଁ ସାମ୍ବିଧାନିକ ବ୍ୟବସ୍ଥା ଅନୁସାରେ 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ' ଘୋଷଣା କଲେ । ପରେ ପରେ ୧୯୩୩ ମାର୍ଚ୍ଚ ୧୭ରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ସମ୍ପର୍କରେ ଇଂରେଜ ସରକାରଙ୍କ ଦ୍ୱାରା ଶ୍ୱେତପତ୍ର ପ୍ରକାଶ ପାଇଲା ।

୧୯୩୫ ମସିହା ଭାରତ ଶାସନ ଆଇନ୍‌ରେ 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ' ସମ୍ପର୍କରେ ସବିଶେଷ ତଥ୍ୟ ସ୍ଥାନିତ ହେଲା । 'ଭାରତ ଶାସନ' ଆଇନ୍ ଧାରା-୨୮୯ ଅନୁସାରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନର ମାନ୍ୟତା ଦିଆଗଲା । ୧୯୩୬ ମାର୍ଚ୍ଚ ତିନିରେ ଭାରତ ଶାସନ- ଓଡ଼ିଶା ଗଠନ ନିର୍ଦ୍ଦେଶ ୧୯୩୬ ଇଂରେଜ ସମ୍ରାଟ୍ ଘୋଷଣା କଲେ । କୋଟି ଓଡ଼ିଆଙ୍କ ବହୁ ଆକାଙ୍‌କ୍ଷିତ ଓ ଚିର ଇପ୍‌ସିତ ସ୍ୱତନ୍ତ୍ର ପ୍ରଦେଶ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ସାକାର ହେଲା । ଏଥିସହିତ ଉତ୍କଳଗୌରବଙ୍କ ଅଦମ୍ୟ ଉତ୍ସାହ, ନିଷ୍ଠା ଓ ଜାତୀୟତା ଓ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଭଳି ଉତ୍କଳର ବରପୁତ୍ରମାନଙ୍କ ଅସୀମ ଦେଶପ୍ରେମ ଯୋଗୁଁ ଓଡ଼ିଆଙ୍କ ସ୍ୱପ୍ନ ବାସ୍ତବ ରୂପ ନେଲା ।

ଗୌରବର କଥା ହଜାର ବର୍ଷର ଐତିହାସିକ ସହର କଟକ ରହିଲା ଏହାର ରାଜଧାନୀ । ଲୁହଲହୁକୁ ଏକାଠି କରି ଛିନ୍ନମସ୍ତା, ଖଣ୍ଡବିଖଣ୍ଡିତା ଉତ୍କଳଜନନୀର ସମ୍ପୂର୍ଣ୍ଣ ଓ ସାକାର ରୂପ କୋଟି ଓଡ଼ିଆଙ୍କ ପ୍ରାଣରେ ଭରିଦେଇଥିଲା ଅସୁମାରୀ ଆନନ୍ଦ । ଘାତ ପ୍ରତିଘାତ, ସମସ୍ତ ବାଧାବନ୍ଧନ ଏଡ଼ାଇ ଓଡ଼ିଆଙ୍କ ହାତମୁଠାକୁ ଆସିଥିବା ଅମୃତ ଫଳସଦୃଶ ଏହି ସ୍ୱାତନ୍ତ୍ର୍ୟ ଉପଲବ୍‌ଧିରେ ସର୍ବେ ଆତ୍ମହରା, ଆନନ୍ଦ ଓ ଉଲ୍ଲାସ ଭିତରେ ହଜିଗଲେ କିନ୍ତୁ ଦୁଃଖର ବିଷୟ କୋଟି ଓଡ଼ିଆର ମଉଡ଼ମଣି, ଗର୍ବ ଓ ଗୌରବର ପ୍ରତୀକ ଯେ କି, ଓଡ଼ିଆଙ୍କ ମେଳରେ ଏହିଭଳି ଆତ୍ମହରା ପରିବେଶରେ ଆଉ ଉପସ୍ଥିତ ନଥିଲେ । ସେ ଆଉ କେହି ନୁହଁନ୍ତି, ସେ ସବୁରି ହୃଦୟର ଏକାନ୍ତ ଆପଣାର କୁଳବୃଦ୍ଧ ମଧୁସୂଦନ । ଆଜିର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ମରଣୀୟ ମୁହୂର୍ତ୍ତରେ ସେହି ବୀର ବରପୁତ୍ରଙ୍କୁ ଶ୍ରଦ୍ଧାସୁମନ ଅର୍ପଣ କରୁଛୁ ।

ଖୁଂଟୁଣୀ, ଆଠଗଡ଼, କଟକ

# ମା' ଚର୍ଚ୍ଚିକା

ଡାକ୍ତର ରାମଚନ୍ଦ୍ର ରାଉତ

ଅର୍ଚ୍ଚିତା ରୁଚିରେ ରୁଚିକାଗ୍ରେ ବିରାଜିତା,
ଅଷ୍ଟବର୍ଗ ପ୍ରଦାୟିନୀ କଷ୍ଟହାରୀ ମାତା ।
ଆଶ୍ରିତ ଜଗତ ଜନ ଖାଲି କିମ୍ପା ବାଙ୍କୀ
ଆତୁଆଳେ ରଖୁ ମା' ଗୋ ତୋ ପଣତ ଢାଙ୍କି ।
ଇଷ୍ଟ ଦେବୀ ମା' ଚର୍ଚ୍ଚିକା ସାକ୍ଷାତ ଈଶ୍ୱରୀ
ଇହ ପର କାଳ ଦେବୀ ଯାଉ ତୋତେ ସ୍ମରି ।
ଇହିତ ପୂରଣ କରୁ ଈକ୍ଷଣ ମାତ୍ରକେ
ଈଷିତ ମାତ୍ର କରୁଣା ଦିଅ ମା' ଚର୍ଚ୍ଚିକେ ।
ଉଝାଳିବା ପାଇଁ ଦୁଃଖ ଡାକୁ ଉଚ୍ଚ ସ୍ୱରେ
ଉତ୍ପାଟନ କର ତ୍ରାସ ଜଗତର ବାରେ ।
ଉତ୍ତୁଙ୍ଗ ମହାନଦୀରେ ନାବିକର ସାହା
ଉତ୍ପତ୍ତି କରିଣ ପାଳୁ, ଜଗତର ମାଆ ।
ଋକ୍‌ଥ ଲୋଡା ନାହିଁ ଲୋଡା କରୁଣା ତୋହର
ଋତୁ ଷଡ ଯାକ ଧ୍ୟାନ ରହୁ ତୋ ପୟର ।
ଏଣିକି ରଖିଲେ ହରି ମାରି ତାରି ଅରି
ଏହିପରି ଦୟା ମା' ଗୋ ସନ୍ତାନେ ତୋ କରି ।
ଐରାବତ ଅଣିମାଦି ଲୋଡା ନାହିଁ ମାଆ
ଐଶ୍ୱର୍ଯ୍ୟ କେବଳ ତୋର ଐହିକ ନିର୍ମାୟା ।
ଓଲଟାଇବାକୁ ଆମ କପାଳ ଲିଖନ
ଓଜସ୍ୱିତା ମା ଗୋ' ତୁ କରିବୁ ବିଧାନ ।
ଔଧସ୍ୟ ଯେହ୍ନେ ଶିଶୁକୁ କରିଥାଏ ହିତ
ଔଦାର୍ଯ୍ୟ ନିମନ୍ତେ ତୋର କରୁ ପ୍ରଣିପାତ ।

ଗୋପାଳପୁର (ହରିହରଭେଟ)
ପୋ: ପାଟପୁର, ବାଙ୍କୀ, କଟକ

# ଉତ୍କଳରତ୍ନ ବାରିଷ୍ଟର ବିଶ୍ୱନାଥ ମିଶ୍ର

ପ୍ରଫେସର (ଡ.) ସୂର୍ଯ୍ୟ କୁମାର ମିଶ୍ର

ଅକ୍ଟୋବର ୧୪ ତାରିଖ ୧୯୧୦ ମସିହା । ଲଣ୍ଡନର ଚାରିଗୋଟି ବାରିଷ୍ଟରି କରିବାପାଇଁ ଉଦ୍ଦିଷ୍ଟ ଇନ୍ (ଗ୍ରେଜ୍ଇନ୍, ଇନ୍ନର ଟେଂପଲ୍, ଲିଙ୍କନ ଇନ୍ ଓ ମିଡିଲ୍ ଟେଂପଲ୍)ମାନଙ୍କ ମଧ୍ୟରୁ ପ୍ରସିଦ୍ଧ ମିଡିଲ୍ ଟେଂପଲ୍ରେ ନାମ ଲେଖାଇଲେ ବଲ୍ଲଭଭାଇ ଜାଭେରିଭାଇ ପଟେଲ ବାରିଷ୍ଟର ହେବା ଲକ୍ଷ୍ୟ ନେଇ । ଏହି ବଲ୍ଲଭଭାଇ ପରବର୍ତ୍ତୀ ସମୟରେ ଭାରତର ଉପପ୍ରଧାନମନ୍ତ୍ରୀ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ନାମରେ ପ୍ରସିଦ୍ଧି ଲାଭ କରିଥିଲେ । ନିକଟରେ ପୃଥିବୀର ସର୍ବୋଚ୍ଚ ପ୍ରତିମୂର୍ତ୍ତି ଷ୍ଟାଚ୍ୟୁ ଅଫ୍ ୟୁନିଟି ଏହି ମହାମାନବଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହୋଇଅଛି ।



ସେହି ୧୯୧୦ ମସିହା ନଭେମ୍ବର ୧୭ ତାରିଖ ଦିନ ଆଉ ଜଣେ ମହାନ୍ ବ୍ୟକ୍ତିତ୍ୱ ସେହି ମିଡିଲ୍ ଟେଂପଲ୍ରେ ବାରିଷ୍ଟରି କରିବାପାଇଁ ନାମ ଲେଖାଇଥିଲେ । ଏଠାରେ ଉଲ୍ଲେଖନୀୟ ଯେ ସେ ଥିଲେ ଜଣେ ଓଡ଼ିଆ । ସେ ଥିଲେ ବିଶ୍ୱନାଥ ମିଶ୍ର । ଉଭୟ ବଲ୍ଲଭଭାଇ ପଟେଲ ଏବଂ ବିଶ୍ୱନାଥ ମିଶ୍ର ଏକା ଅନୁଷ୍ଠାନରୁ ଏକା ଦିନରେ ବାରିଷ୍ଟର ହୋଇ ସମ୍ମାନଜନକ ବାରକୁ ଡକରା ପାଇଥିଲେ । ସେ ଦିନଟି ଥିଲା ଜାନୁଆରୀ ୨୭ ତାରିଖ ୧୯୧୩ ମସିହା । ଏହି ସଫଳତା ହାସଲ ପରେ ବିଶ୍ୱନାଥ ହୋଇଗଲେ ଓଡ଼ିଶାର ପ୍ରଥମ ବାରିଷ୍ଟର ବିଶ୍ୱନାଥ ମିଶ୍ର ।

ପୁରୀ ଜିଲ୍ଲା ସାକ୍ଷୀଗୋପାଳ ନିକଟସ୍ଥ ନୂଆସୋମେଶ୍ୱରପୁର ଶାସନରେ ୧୮୭୮ ମସିହା ଅକ୍ଟୋବର ୧୮ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ବିଶ୍ୱନାଥ । ପିତା କୁଳମଣି ଥିଲେ ନିତାନ୍ତ ଗରିବ । ଯଜମାନି କରି ଚଳାଉଥିଲେ ନିଜର ବଡ଼ ପରିବାରକୁ । ମାତା ରାଧିକା ଦେବୀ ଆର୍ଥିକ ଦୁରବସ୍ଥା ସତ୍ତ୍ୱେ ପରିବାରର ସମସ୍ତଙ୍କୁ ସ୍ନେହ ଆଦରଦେଇ ବଢ଼ାଉଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲାପରି ବିଶ୍ୱନାଥ ପିଲାଟି ଦିନୁ ମେଧାବୀ ଥିଲେ ଏବଂ ନିଜ ଶିକ୍ଷାରେ କୌଣସି ତ୍ରୁଟି ରଖୁନଥିଲେ । ଗାଁ ଚାଟଶାଳୀ ଶିକ୍ଷା ପରେ ବେରବୋଇ ଭର୍ଣ୍ଣାକୁଲାର ସ୍କୁଲରୁ ନିମ୍ନ ପ୍ରାଥମିକ ଶିକ୍ଷା କୃତିତ୍ୱର ସହ ସମାପ୍ତ କରିଥିଲେ । ଏହାପରେ ଉଚ୍ଚ ଶିକ୍ଷା ପୁରୀ ଜିଲ୍ଲା ସ୍କୁଲରେ ସ୍ୱାଭାବିକ ଭାବେ କରିବା କଥା । ହେଲେ ବ୍ରାହ୍ମଣ ସଭା ଏହାର ଘୋର ବିରୋଧ କରିଥିଲା । କାରଣ ସେସମୟରେ ଇଂରେଜୀ ଶିକ୍ଷା ଏକ ପାପାଚାର ରୂପେ ଗଣା ହେଉଥିଲା । ବ୍ରାହ୍ମଣ ଶାସନର ଘୋର

ବିରୋଧ ସତ୍ତ୍ୱେ ପିତା କୁଳମଣି ପୁତ୍ର ବିଶ୍ୱନାଥଙ୍କୁ ଉଚ୍ଚଶିକ୍ଷା ପାଇଁ ଉତ୍ସାହିତ କରିଥିଲେ ଏବଂ ଆବଶ୍ୟକ ଜରିମାନା ଅର୍ଥ ବ୍ରାହ୍ମଣ ଶାସନରେ ପଇଠକରି ଜିଲ୍ଲା ସ୍କୁଲରେ ତାଙ୍କ ନାମ ଲେଖାଇଥିଲେ। ବିଶ୍ୱନାଥ ପୁରୀ ଜିଲ୍ଲା ସ୍କୁଲରେ ନିଜର ପଢ଼ା କୃତିତ୍ୱର ସହ ସାରି ୧୯୦୨ ମସିହାରେ ଏଣ୍ଟ୍ରାନ୍ସ ଫାଇନାଲରେ ଦଶ ଟଙ୍କାର ଡିଭିଜିନାଲ ବୃତ୍ତି ପାଇ ଉତ୍ତୀର୍ଣ୍ଣ ହୋଇଥିଲେ। ଏହାପରେ ସେ ସେହି ୧୯୦୨ ମସିହାରେ ରେଭେନ୍ସା କଲେଜରେ ନାମ ଲେଖାଇଥିଲେ। ୧୯୦୪ ମସିହାରେ ଏଫ୍.ଏ. ପରୀକ୍ଷାରେ ମଧ୍ୟ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ।

ଏହାପରେ ବିଶ୍ୱନାଥଙ୍କ ଜୀବନର ପଥ ବଦଳି ଯାଇଥିଲା, ଯେଉଁଥିରେ କୁଳବୃଦ୍ଧ ମଧୁସୂଦନ ଦାସଙ୍କର ମୁଖ୍ୟ ଭୂମିକା ଥିଲା। ୧୯୦୩ ମସିହାରେ ମଧୁବାବୁଙ୍କର ମାନସ ପ୍ରସୂତ ଉତ୍କଳ ସମ୍ମିଳନୀ ଜନ୍ମ ନେଇଥିଲା ଏବଂ ଏହାର ପ୍ରଥମ ଅଧିବେଶନ କଟକଠାରେ ଅନୁଷ୍ଠିତ ହୋଇଥିଲା। ଏହି ଅଧିବେଶନରେ ଯୁବକ ବିଶ୍ୱନାଥ ରେଭେନ୍ସାର ଛାତ୍ର ହିସାବରେ ସମ୍ମିଳନୀର ସ୍ୱେଚ୍ଛାସେବକ ଭାବେ ଯୋଗଦେଇ ନିଜର କର୍ତ୍ତବ୍ୟନିଷ୍ଠା ଫଳରେ ମଧୁବାବୁଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ। ୧୯୦୪ ମସିହାରେ ଏଫ୍.ଏ. ପାସ୍ କଲାପରେ ସେ ନିଜ ଜୀବିକାର ସଂଧାନରେ ମଧୁବାବୁଙ୍କର ଉପଦେଶ ଲୋଡ଼ିଥିଲେ। ସେସମୟରେ ଓଡ଼ିଶା ମାନେ ଗୋଟିଏ ଡିଭିଜନ କଟକ, ପୁରୀ ଓ ବାଲେଶ୍ୱରକୁ ନେଇ। ଯାହାଥିଲା ବଙ୍ଗ ପ୍ରଦେଶ ଅନ୍ତର୍ଗତ। ସମ୍ବଲପୁର ଆଦି ପଶ୍ଚିମାଞ୍ଚଳ କେନ୍ଦ୍ର ପ୍ରଦେଶ ଅନ୍ତର୍ଗତ ଥିଲା ଏବଂ ଗଞ୍ଜାମ, କୋରାପୁଟ ଆଦି ଦକ୍ଷିଣାଞ୍ଚଳ ଥିଲା ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ। ମାନ୍ଦ୍ରାଜରେ ଓଡ଼ିଆମାନଙ୍କ ଅବସ୍ଥା ଥିଲା ଦୟନୀୟ। ସେମାନଙ୍କର ଶିକ୍ଷା ଓ ପ୍ରିୟ ମାତୃଭାଷା 'ଓଡ଼ିଆ' ଥିଲା ଗୁରୁତର ଅବସ୍ଥାରେ। ସେ ଅଞ୍ଚଳର ବିଦ୍ୟାଳୟମାନଙ୍କରେ ଓଡ଼ିଆ ପଢ଼ାଉଥିଲେ ତେଲୁଗୁ ଶିକ୍ଷକମାନେ, ଯାହା ଫଳରେ ଓଡ଼ିଆ ଭାଷାର ଅବକ୍ଷୟ ମାରାତ୍ମକ ଭାବେ ଘଟୁଥିଲା। ମଧୁବାବୁଙ୍କ ବିଶ୍ୱନାଥଙ୍କୁ ଉପଦେଶ ଥିଲା, ଯଦି ଓଡ଼ିଆ ଭାଷା ଓ ଓଡ଼ିଆଙ୍କ ପାଇଁ ତୋ ହୃଦୟ ଉଦ୍‌ବେଳିତ ହେଉଛି, ତେବେ ଯା, ସେଇମାନଙ୍କ ସେବା କର, ତୋ ମାତୃଭାଷାକୁ ରକ୍ଷା କର। ଏହି ଉପଦେଶ ବିଶ୍ୱନାଥଙ୍କ ପାଇଁ ହୋଇଯାଇଥିଲା ବେଦର ଗାର, ଯାହା ଜୀବନର ଶେଷ ନିଃଶ୍ୱାସ ଯାଏଁ ସେ ଅକ୍ଷରେ ଅକ୍ଷରେ ପାଳି ଆସିଥିଲେ। ଏଣୁ ସେ କର୍ମମୟ ଜୀବନ ଆରମ୍ଭ କରିଥିଲେ ଗଞ୍ଜାମର ରସୋଲକୋଣ୍ଡା (ଆଜିର ଭଞ୍ଜନଗର)ରେ। ଓଡ଼ିଆ ଶିକ୍ଷକ ରୂପେ ଯୋଗଦେଇଥିଲେ ରସୋଲକୋଣ୍ଡା ଟ୍ରେନିଂ ସ୍କୁଲରେ। କାର୍ଯ୍ୟଥିଲା ଉଭୟ ଭାଷା ପ୍ରବୀଣ ଶିକ୍ଷକଙ୍କୁ ସଠିକ୍ ଓଡ଼ିଆ ଶିକ୍ଷା ଦେବା। ଯାହା ସେତେବେଳକୁ ଦୟନୀୟ ଅବସ୍ଥାରେ ପହଞ୍ଚି ଯାଇଥିଲା। କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଜନ୍ମସ୍ଥଳୀରେ ଓଡ଼ିଆ ପଢ଼େଇବା ପାଇଁ ଘୋର ଅଭାବ ଦେଖାଦେଇଥିଲା ଓଡ଼ିଆ ଶିକ୍ଷକଙ୍କର। ଏପରି ସଂକଟମୟ ସମୟରେ ବିଶ୍ୱନାଥ ଯୋଗ ଦେଇଥିଲେ ଓଡ଼ିଆ ପଣ୍ଡିତ ଭାବେ ରସୋଲକୋଣ୍ଡାରେ।

ବିଶ୍ୱନାଥ ଥିଲେ ପ୍ରଚଣ୍ଡ ଓଡ଼ିଆ ଭାଷାପ୍ରେମୀ ଏବଂ ଉପାନ୍ତ ଅଞ୍ଚଳର ଓଡ଼ିଆଙ୍କ ସ୍ୱାଭିମାନର ରକ୍ଷାକର୍ତ୍ତା। କିନ୍ତୁ ଏଇ ଅଭିଯାନରେ ସେ ଶିକ୍ଷକ ରୂପେ ନିଜକୁ ଉପରସ୍ତରର କାର୍ଯ୍ୟକଳାପରେ ସାମିଲ କରିପାରୁନଥିଲେ। ଏହାଥିଲା ତାଙ୍କର ପଶ୍ଚାତାପର କାରଣ। ଏଣୁ ସେ ନିର୍ଣ୍ଣୟ ନେଲେ ଓକିଲ ହେବା ପାଇଁ, ଯଦ୍ୱାରା ବିଚ୍ଛିନ୍ନାଞ୍ଚଳର ଓଡ଼ିଆଙ୍କୁ ନ୍ୟାୟ ଦେଇପାରିବେ। ୧୯୦୫ର ଶେଷ ଭାଗରେ ମାନ୍ଦ୍ରାସରୁ ପ୍ଲିଡରସିପ୍ ପାସ୍ କରି ଫେରିଆସିଲେ ବିଶ୍ୱନାଥ। ଚାହିଁଥିଲେ ସେ କଟକରେ ରହି ନିଜର ନ୍ୟାୟ ବୃତ୍ତି ଚଳେଇ ବେଶ୍ ଧନ ଅର୍ଜନ କରିପାରିଥାନ୍ତେ, କିନ୍ତୁ ତାଙ୍କର ଚିନ୍ତାଧାରା ଥିଲା ଭିନ୍ନ। ସେ ଥିଲେ ବିଚ୍ଛିନ୍ନାଞ୍ଚଳର ଦରଦୀ ବନ୍ଧୁ। ତେଣୁ ଆସ୍କା ଯାଇ ନିଜର ବୃତ୍ତି ଆରମ୍ଭ କଲେ ଏବଂ ଓଡ଼ିଆଙ୍କର ନ୍ୟାଯ୍ୟ ଦାବୀ ପାଇଁ ସଂଗ୍ରାମ କରିବା ଆରମ୍ଭ କରିଦେଇଥିଲେ। ନିଜର ପ୍ରଥମ ପଦକ୍ଷେପ ସ୍ୱରୂପ ସେ ଗଞ୍ଜାମର କୋର୍ଟ କଚେରୀରେ ବ୍ୟବହୃତ ଇଂରାଜୀ ଓ ତେଲୁଗୁ ଭାଷାରେ ଅର୍ଜି ଦେବା ଓ ଜବାବ ସୁଆଲ କରିବା ପରଂପରାକୁ ବଦଳାଇ ଓଡ଼ିଆ ଭାଷାର ବ୍ୟବହାରକୁ ପ୍ରଚଳିତ କରାଇପାରିଥିଲେ। ଏହାଦ୍ୱାରା ସମଗ୍ର ବିଚ୍ଛିନ୍ନାଞ୍ଚଳର ପ୍ରଶଂସା ମଧ୍ୟ ପାଇପାରିଥିଲେ। ଅବଶ୍ୟ ପ୍ରାରମ୍ଭରେ ଏହା ଫଳରେ ତାଙ୍କୁ କିଛି ତେଲୁଗୁ ମହକିଲଙ୍କୁ ହରାଇବାକୁ ପଡ଼ିଥିଲା। ହେଲେ, ତାଙ୍କ ବ୍ୟବହାର ଏବଂ ମହକିଲଙ୍କ ପ୍ରତି ନିଷ୍ଠା ତେଲୁଗୁ ମହକିଲଙ୍କୁ ମଧ୍ୟ ଫେରି ଆସିବାକୁ ବାଧ୍ୟ କରିଥିଲା। ଧୀରେ ଧୀରେ ବିଶ୍ୱନାଥ ହୋଇଯାଇଥିଲେ ଆସିକାର ଏବଂ ଗଞ୍ଜାମର

ଜଣେ ନାମକରା ଓକିଲ। ଓଡ଼ିଆଙ୍କ ନ୍ୟାଯ୍ୟ ଦାବିକୁ ଉତ୍ଥାପନ କରିବା ଓ ଓଡ଼ିଆ ଅସ୍ମିତାକୁ ଜାଗୃତ କରିବାରେ ବିଶ୍ୱନାଥ ହୋଇଗଲେ ଗଞ୍ଜାମ ଜିଲ୍ଲାର ଜଣେ ପ୍ରଧାନ ବ୍ୟକ୍ତିତ୍ୱ। ଓକିଲାତିର ଶୀର୍ଷରେ ପହଂଚିଲା ପରେ, ଜିଜ୍ଞାସୁ ଏବଂ ଉଚ୍ଚାଭିଳାଷୀ ବିଶ୍ୱନାଥଙ୍କ ମନ ବଳେଇଲା ବାରିଷ୍ଟର ହେବାକୁ। ସେ ସମୟରେ କୌଣସି ଓଡ଼ିଆ ବାରିଷ୍ଟର ହୋଇନଥିଲେ। ଏହା ହେବା ମଧ୍ୟ ଥିଲା ଦୁଷ୍କର ବ୍ୟାପାର। ସମୁଦ୍ର ପଥରେ ପ୍ରାୟ ମାସେ କାଳ ଜାହାଜରେ ଯାତ୍ରାକରି, ଅଜସ୍ର ଅର୍ଥ ଖର୍ଚ୍ଚକରି ଲଣ୍ଡନରେ ବାରିଷ୍ଟରି କରିବା କିଛି ସହଜ କଥା ନଥିଲା। ତଥାପି ବାରିଷ୍ଟର ହେବା ସେ କାଳର ଭାରତୀୟଙ୍କ ପାଇଁ ଥିଲା ଚରମ ଅଭିଳାଷ। ବିଶ୍ୱନାଥ ବା ସେଥିରୁ ବାଦ୍ ପଡ଼ନ୍ତେ କିପରି ? ବାରିଷ୍ଟରି ଶିକ୍ଷାରେ ନାମ ଲେଖାଇବା ପାଇଁ ଚେଷ୍ଟା କରିଚାଲିଲେ ସେ। ଏ ମଧ୍ୟରେ କଲିକତା ବିଶ୍ୱବିଦ୍ୟାଳୟରୁ ୧୯୦୮ ମସିହାରେ ପବ୍ଲିକ ଏକ୍‌ଜାମିନେସନରେ ଉତ୍ତୀର୍ଣ୍ଣ ହୋଇ ବିଶ୍ୱବିଦ୍ୟାଳୟର ସଭ୍ୟ ହୋଇପାରିଥିଲେ। ପୁଣି ଆଗେଇ ଚାଲିଲା ବାରିଷ୍ଟରି ଶିକ୍ଷା ପାଇଁ ଆବେଦନ। ୧୯୦୯ ମସିହାର ଶେଷ ଭାଗରେ 'ଗ୍ରେଜ୍ ଇନ୍'ରେ ନାମ ଲେଖାଇବା ପାଇଁ ପାଇଥିଲେ ପ୍ରବେଶ ପତ୍ର। ତାଙ୍କର ଖୁସିର ସୀମା ରହିଲା ନାହିଁ। ପିତା କୁଳମଣିଙ୍କଠାରୁ ଅନୁମତି ଆଣିବାକୁ ନିଜ ଗାଁ ନୂଆ ସୋମେଶ୍ୱରପୁରକୁ ଗଲେ ସେ। ହେଲେ କୁଳମଣିଙ୍କ ଉତ୍ତର ଥିଲା ନାସ୍ତିସୂଚକ, ମୁଁ ବଞ୍ଚିବାଯାଏଁ ତୁ ବିଲାତ ଯାଇପାରିବୁ ନାହିଁ। ବିଶ୍ୱନାଥ ହୁଏତ ହତାଶ ହୋଇଥିବେ କିନ୍ତୁ ଆଜ୍ଞାଧୀନ ସନ୍ତାନ ଥିଲେ ସେ। କୌଣସି ଯୁକ୍ତିତର୍କ ନକରି ଫେରି ଆସିଥିଲେ ଆସିକା, ନିଜ କର୍ମସ୍ଥଳୀକୁ। ହେଲେ ବିଧିର ବିଧାନ ଥିଲା ଅନ୍ୟ ପ୍ରକାର। ଠିକ୍ ଚାରିମାସ ପରେ ପିତା କୁଳମଣିଙ୍କର ସ୍ୱର୍ଗବାସ ହୋଇଗଲା। ପୁତ୍ର ରୂପେ ନିଜ ଦାୟିତ୍ୱ ନିର୍ବାହ କଲେ ସେ। କିଛିଦିନ ପରେ ପୁଣି ବାରିଷ୍ଟରି କରିବାର ଅଭିଯାନ ଆରମ୍ଭ କରିଥିଲେ। ଏଥର ପ୍ରବେଶ ପତ୍ର ପାଇଥିଲେ 'ମିଡିଲ୍ ଟେଂପଲ'ରୁ, ଯାହା ପରବର୍ତ୍ତୀ ସମୟରେ ତାଙ୍କ ଭାଗ୍ୟ ବଦଳାଇ ଦେଇଥିଲା ଏବଂ ସେ ହୋଇପାରିଥିଲେ ସର୍ଦ୍ଦାର ପଟେଲଙ୍କ ସହପାଠୀ। ଦୁହେଁ ଏକାଦିନରେ ଜାନୁଆରୀ ୨୭, ୧୯୧୩ରେ ବାରିଷ୍ଟର ହୋଇଥିଲେ। ବିଶ୍ୱନାଥ ଇଂଲଣ୍ଡରେ କେବଳ ଯେ ବାରିଷ୍ଟରି ପଢୁଥିଲେ ତାହା ନୁହେଁ, ସେଠାରେ ମଧ୍ୟ ସେ ତାଙ୍କ ପ୍ରିୟ ଓଡ଼ିଶାର ଏକତ୍ରିକରଣ ପାଇଁ ଯତ୍‌ପରୋନାସ୍ତି ଉଦ୍ୟମ ଜାରି ରଖିଥିଲେ। ଏହାଫଳରେ ମି: ମ୍ୟାକ୍‌କ୍ୟାଲମ୍ ସ୍କଟ୍, ଏମ୍‌ପି, ହାଉସ୍ ଅଫ୍ କମନ୍ସରେ ସ୍ୱତନ୍ତ୍ର ଓଡ଼ିଶା ପାଇଁ ଯୁକ୍ତି ବାଢ଼ିଥିଲେ। ସେହିପରି ମି: ଇ. ଏସ୍. ମଣ୍ଟେଗୁ, ସେସମୟର ଅଣ୍ଡର ସେକ୍ରେଟାରୀ ଅଫ୍ ଷ୍ଟେଟ୍ ମଧ୍ୟ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ସପକ୍ଷରେ ମତ ଦେଇଥିଲେ। କେବଳ ଏତିକି ନୁହେଁ, ବାରିଷ୍ଟର ହେଲା ପରେ ସେ 'କିଙ୍ଗସ କାଉନ୍‌ସେଲ୍' ରୂପେ ମନୋନୀତ ହୋଇ ମହାମହିମ ସମ୍ରାଟ୍ ପଞ୍ଚମ ଜର୍ଜଙ୍କ ସହ ସାକ୍ଷାତ କରିବାକୁ ସୁଯୋଗ ପାଇଥିଲେ। ଏହାର ମଧ୍ୟ ସେ ସଦୁପଯୋଗ କରି ଓଡ଼ିଶାର ଏକତ୍ରିକରଣ ଏବଂ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦାବି କରିଥିଲେ।

ବାରିଷ୍ଟର ହୋଇ ପ୍ରିୟ ଜନ୍ମଭୂମିକୁ ଫେରି ଆସିଥିଲେ ସେ। ନିଜ ପରିବାରକୁ ନ ଭେଟି ସିଧାସଳଖ ଯାଇଥିଲେ ଅଗ୍ରଜ ପ୍ରତିମ ଗୋପବନ୍ଧୁଙ୍କ ପାଖକୁ। ଏଥିପାଇଁ ସେ ରେଳଗାଡ଼ିରେ ଯାତ୍ରା କରିଥିଲେ କଲିକତାରୁ। ବାଟଯାକ ବିଭିନ୍ନ ଷ୍ଟେସନ ହୋଇଯାଇଥିଲା ଲୋକାରଣ୍ୟ ବିଲାତ ଫେରନ୍ତା ବାରିଷ୍ଟର ମିଶ୍ରଙ୍କୁ ଦେଖିବା ପାଇଁ। ଯେହେତୁ ସେ ପ୍ରଥମ ଦିନରୁ ହିଁ ଉତ୍କଳ ସମ୍ମିଳନୀର କର୍ମଠ ସଦସ୍ୟ ଥିଲେ, ବାଟଯାକ ବିଭିନ୍ନ ଷ୍ଟେସନରେ ସମ୍ମିଳନୀର ସଦସ୍ୟମାନେ ତାଙ୍କୁ ଦେଖାକରି ବଧେଇ ଦେଇଥିଲେ। କଟକ ଷ୍ଟେସନରେ ମଧୁବାବୁ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ ଏବଂ ଅନେକ ନୂଆ ପୁରୁଣା ଓକିଲ ତାଙ୍କୁ ସଂବର୍ଦ୍ଧନା ଜଣାଇବା ସହ ସ୍ୱାଗତ କରିଥିଲେ। ଏହିପରିଭାବେ ଧୀରେ ଧୀରେ ପାସେଞ୍ଜର ଗାଡ଼ି ଆଗେଇ ଚାଲିଲା ନିଜ ଗନ୍ତବ୍ୟ ପଥରେ। ବିଶ୍ୱନାଥଙ୍କ ଲକ୍ଷ୍ୟସ୍ଥଳ ଥିଲା ସାକ୍ଷୀଗୋପାଳ।

ଏଠାରେ ଗୋଟିଏ କୌତୁକପୂର୍ଣ୍ଣ ଘଟଣା ଘଟିଥିଲା। ଗୋପବନ୍ଧୁ ସତ୍ୟବାଦୀ ବନ ବିଦ୍ୟାଳୟର କିଛି ଛାତ୍ରଙ୍କୁ ସାକ୍ଷୀଗୋପାଳ ଷ୍ଟେସନରେ ବିଶ୍ୱନାଥଙ୍କୁ ରେଳଗାଡ଼ିରୁ ପାଛୋଟି ଆଣିବା ଦାୟିତ୍ୱ ଦେଇଥିଲେ। ପିଲାମାନେ ତାଙ୍କୁ ନଚିହ୍ନିଥିବାରୁ, ଗୋପବନ୍ଧୁ ତାଙ୍କୁ କହିଥିଲେ, ବିଲାତ ଫେରନ୍ତା ସୁଟ୍ ବୁଟ୍ ପିନ୍ଧା ଲୋକଟାଏ, ଦେଖିଲେ ଜାଣିଦେବ। ରେଳଗାଡ଼ି ପହଂଚିବା ପରେ ପିଲାମାନେ ଡବା ପରେ ଡବା ଖୋଜି ଚାଲିଲେ କିନ୍ତୁ

ଏପରି ବର୍ଣ୍ଣିତ ଲୋକଟିର ସଂଧାନ ପାଇ ପାରିଲେ ନାହିଁ। ତେଣେ ଷ୍ଟେସନର ମୁଖ୍ୟଦ୍ୱାର ପାଖରେ ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ ଓ ଆଚାର୍ଯ୍ୟ ହରିହର ବିଶ୍ୱନାଥଙ୍କୁ ପାଛୋଟି ନେବାପାଇଁ ଅପେକ୍ଷା କରିଥାନ୍ତି। ବିଶ୍ୱନାଥ ସେମାନଙ୍କୁ ଦେଖି ସିଧାସଳଖ ତାଙ୍କ ପାଖକୁ ଚାଲିଗଲେ ଏବଂ ସମ୍ବର୍ଦ୍ଧନାର ଆଦାନ ପ୍ରଦାନ ଆରମ୍ଭ ହୋଇଗଲା। ଏତିକିବେଳେ ପିଲାମାନେ ଧଇଁ ସଇଁ ହୋଇ ଆସି ଗୋପବନ୍ଧୁଙ୍କୁ ବ୍ୟସ୍ତ ହୋଇ କହି ପକାଇଲେ, ଆପଣ ବର୍ଣ୍ଣନା କରିଥିବା କୌଣସି ବ୍ୟକ୍ତି ରେଳଗାଡ଼ିରେ ଆସିନାହାନ୍ତି। ଗୋପବନ୍ଧୁ ହସି ହସି ଦେଖାଇଦେଲେ ବିଶ୍ୱନାଥଙ୍କୁ, ଯେ ଥିଲେ ଧୋତି କୁର୍ତ୍ତା ପରିହିତ ଏବଂ ନିତାନ୍ତ ସାଦା ସିଧା। ପରେ ସେ ସତ୍ୟବାଦୀରେ ସେଇ ପିଲାମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ଓ ସେମାନଙ୍କ ସଙ୍ଗେ ତଳେ ବସି ଏକତ୍ର ଭୋଜନ କରିଥିଲେ। ତାଙ୍କ ଉଦ୍‌ବୋଧନର ଏକମାତ୍ର ବାର୍ତ୍ତା ଥିଲା, ଉଚ୍ଚାଭିଳାଷ ରଖ, ଉଚ୍ଚ ହୁଅ, ବାହାର ଦେଶର ଭଲ ଗୁଣଗୁଡ଼ିକ ଆପଣାର କର କିନ୍ତୁ ନିଜ ମୌଳିକ ସଂସ୍କୃତି ଓ ପରଂପରାକୁ ତ୍ୟାଗ କରନାହିଁ।

ଏହି ଆଦର୍ଶର ଅନେକ ଉଦାହରଣ ତାଙ୍କ ଜୀବନରେ ପରିଲକ୍ଷିତ ହୋଇଥିଲା। ବିଲାତରୁ ବାରିଷ୍ଟର ହୋଇ ଫେରିଥିବାରୁ, ତାଙ୍କର ସମସ୍ତ ପରିବାରକୁ ଗାଁରେ ନିଆଁ, ପାଣି ବାସନ୍ଦ କରାଯାଇଥିଲା। ଏପରି ସମୟରେ ତାଙ୍କର ଝିଆରୀର ବିବାହ ଅନୁଷ୍ଠିତ ହେବାକୁ ଥିଲା। ବିବାହ ଦିନ ବର, ବରଯାତ୍ରୀ ଆଦି ଶୋଭାଯାତ୍ରା କରି ଗାଁକୁ ଆସିଲେ। ହେଲେ, ଗାଁବାଲା ସେମାନଙ୍କୁ ପ୍ରଚଣ୍ଡ ବାଧାଦେଲେ ଏବଂ ତାଙ୍କର ସମସ୍ତ ସାମଗ୍ରୀ ଛଡ଼େଇ ନେଲେ। ପୋଲିସ ଆସି ଗ୍ରାମବାସୀଙ୍କୁ ଯେତେବେଳେ ଗିରଫ କରିବାକୁ ଚାହିଁଲା, ବିଶ୍ୱନାଥ ମନା କଲେ ଏବଂ କହିଲେ ଗ୍ରାମବାସୀଙ୍କର କିଛି ଦୋଷ ନାହିଁ। ସେମାନେ ତ ମାତ୍ର ତାଙ୍କର ପରଂପରାର ବଶବର୍ତ୍ତୀ ହୋଇ ଏ କାଣ୍ଡ କରିଛନ୍ତି। ଆଜି ଭଳି ଗୋଟିଏ ଶୁଭଦିନରେ ଗ୍ରାମବାସୀଙ୍କର ଆଶୀର୍ବାଦ ଦରକାର। ସେମାନଙ୍କୁ ଗିରଫ କରିନେଲେ ତାଙ୍କ ଘରେ କାନ୍ଦ ବୋବାଳି ପଡ଼ିଯିବ ଆଉ ଆଶୀର୍ବାଦ ଦେବ କିଏ ? ବିଶ୍ୱନାଥଙ୍କର ଏପରି ଉକ୍ତି ଶୁଣି ଗ୍ରାମବାସୀଙ୍କର ହୃଦୟର ପରିବର୍ତ୍ତନ ହୋଇଗଲା ଏବଂ ବର୍ଷ ବର୍ଷ ଧରି ବିଶ୍ୱନାଥଙ୍କ ପରିବାରକୁ ବାସନ୍ଦ କରିଥିବା ଲୋକେ ତାଙ୍କୁ ସାଧୁବାଦ ଦେବା ଆରମ୍ଭ କରିଦେଲେ ଏବଂ ରାତ୍ରୀର ପ୍ରୀତିଭୋଜନରେ ମଧ୍ୟ ଯୋଗଦାନ କରିଥିଲେ।

ଖାଲି ଏତିକି ନୁହେଁ, ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ କଟକର ଇଦ୍‌ଗାଠାରେ ସଂସ୍କାରକ ବାରିଷ୍ଟର ବିଶ୍ୱନାଥ ନିଜ ସହଧର୍ମିଣୀ କମଳା ଦେବୀଙ୍କ ସହ ମଞ୍ଚାସୀନ ହୋଇଥିଲେ। ବର୍ତ୍ତମାନ ହୁଏତ ଏହା ଏକ ସାଧାରଣ ଘଟଣା ରୂପେ ବିବେଚିତ ହୋଇପାରେ, କିନ୍ତୁ ସେସମୟରେ ଓଡ଼ିଶାର ସଭା ସମିତିମାନଙ୍କରେ ମହିଳାମାନେ ଦେଖଣାହାରୀ ଭାବେ ପ୍ରବେଶ ମଧ୍ୟ ଏକ ଆଶୋଭନୀୟ ଘଟଣା ଭାବେ ବିବେଚିତ ହେଉଥିଲା। ଏହି ଘଟଣା ତାଙ୍କ ଗ୍ରାମରେ ଏବଂ ସମଗ୍ର ପୁରୀରେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା। ଆହୁରି ଏକ ଉଲ୍ଲେଖନୀୟ ଘଟଣା ଥିଲା ତାଙ୍କ ଜୀବନରେ, ଯାହା ସେସମୟରେ ପରିସ୍ଥିତିରେ ବେଶ୍ ସଂସ୍କାରମୂଳକ ରୂପେ ପରିଗଣିତ ହୋଇଥିଲା। ତାଙ୍କର କନିଷ୍ଠା କନ୍ୟା ସୁମତି ଦେବୀ (ଏବେ ବୟାନବେ ବର୍ଷିଆ) ସେସମୟରେ ନିଜେ ସାଇକଲ ଚଢ଼ି ସ୍କୁଲକୁ ଯିବା ଆସିବା କରିପାରୁଥିଲେ। ଏ ସବୁ ଘଟଣାଗୁଡ଼ିକ ଅନୁଧ୍ୟାନ କଲେ ଜଣାପଡ଼େ, ବିଶ୍ୱନାଥ ନିଜ ଜୀବନରେ ଜଣେ ମହାନ୍ ସଂସ୍କାରକ ନିଶ୍ଚୟ ଥିଲେ କିନ୍ତୁ ତାଙ୍କର ନିଜ ବିଶ୍ୱାସକୁ ସେ ଅନ୍ୟମାନଙ୍କ ଉପରେ ଜୋର ଜବରଦସ୍ତି ଲଦି ଦେବାକୁ ଆଦୌ ପସନ୍ଦ କରୁନଥିଲେ। ଖାଲି ଏତିକି ନୁହେଁ, ଅନ୍ୟର ବିଶ୍ୱାସକୁ ସମାଲୋଚନା ନକରି ବରଂ ସମ୍ମାନ ଦେଉଥିଲେ। ଏହା ଥିଲା ତାଙ୍କ ଜୀବନର ବୈଚିତ୍ର୍ୟ । ଆହୁରି ମଧ୍ୟ ତାଙ୍କର ଅନେକ କାର୍ଯ୍ୟକଳାପ ଏ ଦିଗରେ ତାଙ୍କର ଜୀବନର ବୈଶିଷ୍ଟ୍ୟକୁ ପ୍ରତିପାଦିତ କରିଥିଲା। ଏହିପରି ଏକ ସଂସ୍କାରମୂଳକ କାର୍ଯ୍ୟ ଥିଲା ତାଙ୍କର ଜ୍ୟେଷ୍ଠା କନ୍ୟା ସତୀ ଦେବୀଙ୍କର ବିବାହ। ପୂର୍ବରୁ ଯେପରି ବର୍ଣ୍ଣନା କରାଯାଇଛି ପଣ୍ଡିତ ଗୋପବନ୍ଧୁଙ୍କୁ ସେ ନିଜର ଅଗ୍ରଜ ପରି ସମ୍ମାନ ଦେଉଥିଲେ ଏବଂ ଭାଇନା ବୋଲି ସମ୍ବୋଧନ କରୁଥିଲେ, ଯଦିଚ ସେ ଗୋପବନ୍ଧୁଙ୍କଠାରୁ ମାତ୍ର ଏକ ବର୍ଷ ସାନ ଥିଲେ। ସେସମୟରେ କୌଣସି ପ୍ରତିଷ୍ଠିତ ପରିବାରର କନ୍ୟାକୁ ଦ୍ୱିତୀୟ ପକ୍ଷର ବିବାହ ଦେବା ଏକ ସମାଜ ସ୍ୱୀକୃତ ବ୍ୟାପାର ନଥିଲା। ତେବେ ବି ବିଶ୍ୱନାଥ ଗୋପବନ୍ଧୁଙ୍କ ପରାମର୍ଶ ମାନି ତାଙ୍କର ଜ୍ୟେଷ୍ଠା କନ୍ୟାଙ୍କର ବିବାହ ପରବର୍ତ୍ତୀ

ସମୟର ପ୍ରସିଦ୍ଧ ପ୍ରଶାସକ, ଲେଖକ ଓ ପ୍ରାବନ୍ଧିକ ଶ୍ରୀ ଗୋବିନ୍ଦ ତ୍ରିପାଠୀଙ୍କ ସଙ୍ଗେ ସମ୍ପନ୍ନ କରିଥିଲେ। ଏଠାରେ ଉଲ୍ଲେଖ ଯୋଗ୍ୟଯେ, ଗୋବିନ୍ଦ ତ୍ରିପାଠୀ ଓଡ଼ିଶାର ପରବର୍ତ୍ତୀ କାଳର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ କନିଷ୍ଠା ଭଗିନୀ ରେବତୀଙ୍କୁ ବିବାହ କରିଥିଲେ ଏବଂ ଠିକ୍ ଦୁଇବର୍ଷ ପରେ ରେବତୀ ଏକ ପୁତ୍ର ସନ୍ତାନକୁ ଜନ୍ମ ଦେଇ ପରଲୋକ ପ୍ରାପ୍ତ ହୋଇଥିଲେ। ସେସମୟରେ ଗୋବିନ୍ଦ ଏକୋଇଶ ବର୍ଷର ଯୁବକ ଥିଲେ। ସତୀ ଦେବୀଙ୍କ ସହ ଗୋବିନ୍ଦ ତ୍ରିପାଠୀଙ୍କର ଏହା ଦ୍ୱିତୀୟ ବିବାହ ଥିଲା ଏବଂ ଏହା ମଧ୍ୟ ଥିଲା ବାରିଷ୍ଟର ବିଶ୍ୱନାଥଙ୍କ ଜୀବନର ଆଉ ଏକ ସଂସ୍କାରୀ ପଦକ୍ଷେପ।

ବାରିଷ୍ଟର ବିଶ୍ୱନାଥ ଉତ୍କଳ ସମ୍ମିଳନୀର ଥିଲେ ଅବିଚ୍ଛେଦ୍ୟ ଅଙ୍ଗ। ୧୯୦୩ରେ ସେ ହୋଇଥିଲେ ସମ୍ମିଳନୀର ଏକ ସ୍ୱେଚ୍ଛାସେବୀ, କିନ୍ତୁ ୧୯୦୪ରେ ସେ ଗଞ୍ଜାମର ପ୍ରତିନିଧିତ୍ୱ କରିଥିଲେ ପଣ୍ଡିତ ବିଶ୍ୱନାଥ ରୂପେ। ଏହି ଅଧିବେଶନରୁ ହିଁ ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତ ପ୍ରତୀୟମାନ ହୋଇଥିଲା। କଟକରେ ଅନୁଷ୍ଠିତ ଏହି ପ୍ରଥମ କାର୍ଯ୍ୟକାରୀ ଅଧିବେଶନରେ ଯୁବକ ବିଶ୍ୱନାଥ ନିଜର ବିଦ୍ୟା, ବୁଦ୍ଧି ଓ ପାରଦର୍ଶିତାର ପରିଚୟ ଦେଇଥିଲେ ଏକ ମହାନ୍ କାର୍ଯ୍ୟକରି।

ଏ ସମ୍ମିଳନୀର ପ୍ରଥମ ଉଦ୍ଦେଶ୍ୟ ଥିଲା ଓଡ଼ିଶାର ଏକତ୍ରିକରଣ ଏବଂ ସ୍ୱତନ୍ତ୍ର ପ୍ରଦେଶ ଗଠନ। ଉଭୟ ଉତ୍କଳଗୌରବ ମଧୁସୂଦନ ଦାସ ଓ ପଣ୍ଡିତ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟ ମଧ୍ୟ ଥିଲା ସେହି ଏକା। ହେଲେ ଗଞ୍ଜାମବାସୀଙ୍କ ଦୁରବସ୍ଥାର ଆଶୁ ପ୍ରତିକାର ପାଇଁ ଉପାୟ ଚିନ୍ତା ସମୟରେ ମଧୁବାବୁଙ୍କ ସମାଧାନର ସୂତ୍ର ଥିଲା ଗଞ୍ଜାମ ଆଦି ଦକ୍ଷିଣାଞ୍ଚଳକୁ ବଙ୍ଗ ପ୍ରଦେଶରେ ମିଶାଇଦେବା। ଗୋପବନ୍ଧୁ କିନ୍ତୁ ଅନ୍ୟ ଉପାୟ ଚିନ୍ତା କରୁଥିଲେ। ତାଙ୍କର ମତ ଥିଲା ବଙ୍ଗରେ ନୁହେଁ ବରଂ କେନ୍ଦ୍ର ପ୍ରଦେଶରେ ମିଶାଇ ଦେବା ଉଚିତ। ଏହି ଭିନ୍ନ ମତ ଉପରେ ଯୁକ୍ତି ତର୍କ ଏତେ ବେଶୀ ଗମ୍ଭୀର ରୂପ ଧାରଣ କଲା ଯେ, ସମ୍ମିଳନୀର ଆରମ୍ଭରୁ ଏହାର ଅନ୍ତ ହୋଇଗଲା ପରି ଲାଗିଲା। ବିଶ୍ୱନାଥ ଏହି ସମୟରେ ଗଞ୍ଜାମର ପ୍ରତିନିଧି ରୂପେ ନିଜର ପରିପକ୍ୱତା ପ୍ରକାଶ କରି ଉଭୟଙ୍କୁ ଅନୁରୋଧ କରିଥିଲେ ଏହି ବାଦ ବିବାଦର ଅନ୍ତ କରିବା ପାଇଁ। ତା'ପରେ ସେ କହିଥିଲେ, ଏ ବିରାଟ ଓଡ଼ିଆ ଭୂଖଣ୍ଡ ମହେନ୍ଦ୍ର ଗିରିଠାରୁ ମେଘାସନ ପର୍ଯ୍ୟନ୍ତ ବିସ୍ତୃତ। ଏହା ଆଦୌ ପ୍ରକୃଷ୍ଟ ସମୟ ନୁହେଁ ଏହି ବିଶାଳ ଭୂଖଣ୍ଡକୁ କେନ୍ଦ୍ର ପ୍ରଦେଶ ଅବା ବଙ୍ଗ ପ୍ରଦେଶରେ ମିଶାଇବା ପ୍ରସଙ୍ଗ ନେଇ। ବର୍ତ୍ତମାନ ପାଇଁ ମୋର ଅନୁରୋଧ ଆପଣମାନେ ଏ ବିତର୍କକୁ ଏହିଠାରେ ସାଙ୍ଗ କରିବେ। ବିଶ୍ୱନାଥଙ୍କ ଏହି ଆନ୍ତରିକ ଅନୁରୋଧ ସମସ୍ତଙ୍କ ମନକୁ ଛୁଇଁଥିଲା ଓ ଅଧିବେଶନରେ ଉପସ୍ଥିତ ସମସ୍ତ ଗଞ୍ଜାମର ନେତୃବୃନ୍ଦ ବିଶ୍ୱନାଥଙ୍କ ଏହି ସାହସୀ ପଦକ୍ଷେପକୁ ଉଚ୍ଚ ସ୍ୱରରେ ପ୍ରଶଂସା କରିଥିଲେ। ଏଇଠାରୁ ହିଁ ଆରମ୍ଭ ହୋଇଯାଇଥିଲା ବିଶ୍ୱନାଥଙ୍କ ଜୟଯାତ୍ରା।

୧୯୦୪ରୁ ବିଶ୍ୱନାଥ ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ ଅତି କର୍ମଠ ଭାବେ ଯୋଗଦାନ କରିଥିଲେ ୧୯୨୧ ମସିହା ଚକ୍ରଧରପୁରରେ ଅନୁଷ୍ଠିତ ଅଧିବେଶନ ଯାଏଁ। ମଝିରେ କେବଳ ବାରିଷ୍ଟରି ପଢ଼ିବା ସମୟତକ ଲଣ୍ଡନରେ ଅବସ୍ଥାନ ଯୋଗୁଁ ସମ୍ମିଳନୀରେ ଯୋଗଦେଇ ପାରିନଥିଲେ। ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ ସେ ବିଭିନ୍ନ ପ୍ରସ୍ତାବମାନଙ୍କର ପ୍ରସ୍ତାବକ, ଅନୁମୋଦକ ବା ସମର୍ଥକ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ। ତାଙ୍କ ଦ୍ୱାରା ଆନୀତ ପ୍ରସ୍ତାବମାନଙ୍କ ମଧ୍ୟରେ ରେଭେନ୍ସା କଲେଜରେ ଆଇନ ଶିକ୍ଷାର ପ୍ରବର୍ତ୍ତନ, କଟକରେ ଇଞ୍ଜିନିୟରିଂ ଶିକ୍ଷାର ପ୍ରଚଳନ ଆଦି ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା। ଉତ୍କଳ ଦୀପିକା ଓ ଦୈନିକ ଆଶା ଆଦି ବିଶ୍ୱନାଥଙ୍କ ଏହି ଉଦ୍ୟମଗୁଡ଼ିକୁ ବିଶେଷ ପ୍ରଶଂସା କରିଥିଲେ। ଏହା ଛଡ଼ା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାକୁ ସରକାରୀ ଭାଷା ରୂପେ ଏବଂ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ ସମ୍ବନ୍ଧୀୟ ଅନେକ ପ୍ରସ୍ତାବ ସହ ସେ ଅଙ୍ଗାଅଙ୍ଗୀ ଭାବରେ ଜଡ଼ିତ ଥିଲେ।

୧୯୨୧ ମସିହାରେ ଉତ୍କଳ ସମ୍ମିଳନୀକୁ ପରିତ୍ୟାଗ କରିବା ପଛରେ ମଧ୍ୟ ଏହିପରି କିଛି କାରଣ ଥିଲା। ଉତ୍କଳ ସମ୍ମିଳନୀର ସୃଷ୍ଟି ପଛରେ ମୂଳ ଉଦ୍ଦେଶ୍ୟ ଥିଲା ବିଚ୍ଛିନ୍ନାଞ୍ଚଳର ଏକତ୍ରିକରଣ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କିନ୍ତୁ ଭାରତୀୟ ଜାତୀୟ କଂଗ୍ରେସର ମୂଳ ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତା। ସମ୍ମିଳନୀର ମୁଖ୍ୟ ପୁରୋଧାମାନେ ଠିକ୍ ଭାବେ

ବୁଝି ପାରିଥିଲେ ବ୍ରିଟିଶ ସରକାରଙ୍କ ସମର୍ଥନ ବିନା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଅସମ୍ଭବ କିନ୍ତୁ ଗୋପବନ୍ଧୁ ଆଦି କଂଗ୍ରେସରେ ଯୋଗଦେଇ ଏହି ଚିନ୍ତାଧାରାର ବିରୋଧୀ ହୋଇଗଲେ ଏବଂ ଦେଶର ସ୍ୱାଧୀନତାକୁ ପ୍ରାଥମିକତା ଦେଲେ। ଏହା ଫଳରେ ସମ୍ମିଳନୀ ବିଭାଜିତ ହୋଇଗଲା। ୧୯୨୧ ଚକ୍ରଧରପୁର ଅଧିବେଶନରେ ଗୋପବନ୍ଧୁ ସମ୍ମିଳନୀକୁ କଂଗ୍ରେସର ଅଂଶ କରିବାକୁ ପ୍ରସ୍ତାବ ଦେଲେ। ଫଳତଃ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର ପ୍ରବକ୍ତାମାନେ ଏହାର ଘୋର ବିରୋଧ କରି ସମ୍ମିଳନୀକୁ ପରିତ୍ୟାଗ କଲେ। ଏହି ବିରୋଧୀମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ବାରିଷ୍ଟର ବିଶ୍ୱନାଥ, ବ୍ରଜସୁନ୍ଦର ଦାସ ଓ ବିଶ୍ୱନାଥ କର ଇତ୍ୟାଦି। ସମ୍ମିଳନୀର ସ୍ରଷ୍ଟା ମଧୁବାବୁ ମଧ୍ୟ ନିଜକୁ ନିରବରେ ନିଜ ସୃଷ୍ଟିଠାରୁ ଦୂରେଇ ନେଲେ। ବସ୍ତୁତଃ ଉତ୍କଳ ସମ୍ମିଳନୀ ୧୯୨୧ ପରଠାରୁ ନିଷ୍କ୍ରିୟ ହୋଇଯାଇଥିଲା।

ବାରିଷ୍ଟର ଭାବରେ ବିଶ୍ୱନାଥ କଲିକତା ହାଇକୋର୍ଟରେ ନିଜର ବୃତ୍ତି ଆରମ୍ଭ କରିବାର ନିଷ୍ପତ୍ତି ନେଇଥିଲେ। ସେତେବେଳେ କୌଣସି ଓଡ଼ିଆ କଲିକତାରେ ଓକିଲାତି କରୁ ନ ଥିଲେ। ମଧୁବାବୁ କଲିକତା ଛାଡ଼ି କଟକ ଚାଲିଆସିଥିଲେ। ତା'ଛଡ଼ା ବିଶ୍ୱନାଥ ଥିଲେ ବାରିଷ୍ଟର, ପ୍ରଥମ ଓଡ଼ିଆ ବାରିଷ୍ଟର। ଅନେକ ଆଶା ଥିଲା ତାଙ୍କଠାରୁ ପ୍ରତ୍ୟେକ ଓଡ଼ିଆଙ୍କର। ଏହାର ପ୍ରମାଣ ମିଳିଥିଲା ବ୍ୟାସକବି ଫକୀର ମୋହନଙ୍କର ଉତ୍କଳଭ୍ରମଣ ରଚନାରୁ। ସେ ଲେଖିଥିଲେ,

ଉଏଲ ମିଷ୍ଟର ବି.ଏନ. ମିଶ୍ର ଗୁଡ଼ବାଇ ଗୁଡ଼ବାଇ
ଭଲା ଆଦର୍ଶଟା ଏକା ଗଲତ ଦେଖାଇ।
ଯାତ୍ରୀ-ତଣ୍ଟିଚିପା ପଣ୍ଡା ଯିବ ବିଲାତକୁ
ସ୍ୱପ୍ନରେ କେ ଆଣିଥିଲା ଏକଥା ମନକୁ।
ବିଚାରା ମୁଁ କରୁଅଛି ପ୍ରାର୍ଥନା ଏତେକ
ହାଇକୋର୍ଟରେ ରଖିଦେବ ଏ ଜାତିର ଟେକ।
ଆଇ ସେ ମିଷ୍ଟର ମିଶ୍ର ଏଗେନ୍ ଗୁଡ଼ବାଇ
ଦୁଃଖିନୀ ଜନମଭୂମି ନଭୁଲିବ ଭାଇ।
ଶୁଣା ଶୁଣି ତୁମେ ପ୍ଲିଡ୍ କର ହାଇକୋଟେ
ହେବ ବାରିଷ୍ଟର ପରି ବାରିଷ୍ଟର ଗୋଟେ।

ସେହିପରି ଶ୍ରୀ ପଦ୍ମଚରଣ ପଟ୍ଟନାୟକ ଉତ୍କଳସାହିତ୍ୟର ମେ ମାସ ୧୯୧୩ ସଂଖ୍ୟାରେ ଲେଖିଥିଲେ,

ସ୍ୱାଗତ ସ୍ୱଦେଶବନ୍ଧୁ ସ୍ୱଦେଶ ରତନ,
ସର୍ବେ ଆଜି ଏକ କଣ୍ଠେ କରୁଛୁଁ ବନ୍ଦନ।
କି ସାହସେ କି ସଂଯମେ ରଖି ଲକ୍ଷ୍ୟ ସ୍ଥିର
ସାଧି ବ୍ରତ ବାହୁଡ଼ିଛ ହେ ସ୍ୱଦେଶ ବୀର।
ମହା ଅଗ୍ନି-ପରୀକ୍ଷାରେ ଦେଲ ପରିଚୟ
ତ୍ୟାଗୀ ଯୋଗୀ ପରି ଅଛି ଅଟଳ ହୃଦୟ।
ସଂସାର ଭ୍ରୁକୁଟୀ ପ୍ରତି ନ ଅନାଇ ତିଳେ
ପ୍ରାଣର ବାସନା ପୂର୍ଣ୍ଣ କରିଅଛ ଧୀରେ।
ସମ ଦମ ସଙ୍ଗେ ତେଜ କରି ସମ୍ମିଶ୍ରଣ
ନବୀନ ଉତ୍କଳେ ଦେଲ ନବୀନ ଚେତନ।
କାଳେ କାଳେ ଏ ସାଧନ ପାଉ ପ୍ରୀତି ପୂଜା
ଜାଗନ୍ତୁ ଏ ଉତ୍କଳର ତନୟ ତନୁଜା।
ଘରେ ଘରେ ଚିରସ୍ଥାୟୀ ହେଉ ତୁମ୍ଭ ନାମ
ତବ ଗୁଣ ଗୁଣି ମୁହିଁ କରୁଛି ପ୍ରଣାମ।

କେବଳ ଏତିକି ନୁହେଁ, ଶ୍ରୀ ନୀଳମଣି ବିଦ୍ୟାରତ୍ନ 'ସମୁଦ୍ର ଯାତ୍ରା ବିଚାର' ନାମକ ପୁସ୍ତକ ଲେଖି ବିଶ୍ୱନାଥଙ୍କ ଜାତି ନିବନ୍ଧ ନ ମାନି ବିଲାତ ଯାତ୍ରା, ତାଙ୍କର ଅଦମ୍ୟ ସାହସ ଓ ବାରିଷ୍ଟରୀ ପଢ଼ିବା ପାଇଁ ପ୍ରବଳ ଉତ୍ସାହର ଭୁରି ଭୁରି ପ୍ରଶଂସା କରିଥିଲେ। ଖାଲି ତା'ନୁହେଁ, ୧୯୧୪ ମସିହାରେ ଚିକିଟିପେଣ୍ଠରେ ଏକ ପଣ୍ଡିତ ସଭା ଡକେଇ ବିଶ୍ୱନାଥଙ୍କୁ 'ଉତ୍କଳ ରତ୍ନ' ଉପାଧିରେ ବିଭୂଷିତ କରାଇଥିଲେ, ଯାହାର ପ୍ରଶଂସାଗାନ ସମଗ୍ର ବିଚ୍ଛିନ୍ନାଞ୍ଚଳ ଏବଂ ଓଡ଼ିଶା ଡିଭିଜନର କୋଣେ, କୋଣେ କରାଯାଇଥିଲା।

ବାରିଷ୍ଟର ବିଶ୍ୱନାଥ କଲିକତା ଅବସ୍ଥାନ କାଳରେ 'ଉତ୍କଳ ସମିତି'ର ସଭାପତି ରୂପେ ନିର୍ବାଚିତ ହୋଇଥିଲେ। ଏହି ସମୟରେ ଅନେକ ନେତୃସ୍ଥାନୀୟ ଓଡ଼ିଆ ଏହାର ସଭ୍ୟ ଥିଲେ। ଏଠାରେ ଉତ୍କଳ ସମ୍ମିଳନୀର ବିଭିନ୍ନ ନିର୍ଦ୍ଧାରଣଗୁଡ଼ିକ ମଧ୍ୟ ସ୍ଥିରୀକୃତ ହେଉଥିଲା। ଅନେକ ଓଡ଼ିଆ ରାଜା, ମହାରାଜାଙ୍କର ମଧ୍ୟ ଏହି ସମିତିରେ ଚଳପ୍ରଚଳ ଥିଲା।

ଓଡ଼ିଶା ଡିଭିଜନକୁ ବଙ୍ଗ ପ୍ରଦେଶ ଅଧୀନରୁ କାଢ଼ିନେଇ ବିହାର-ଓଡ଼ିଶା ଗଠନ ଫଳରେ ବିଶ୍ୱନାଥ କଲିକତା ଛାଡ଼ି ପାଟନା ହାଇକୋର୍ଟରେ ନିଜ ବୃତ୍ତି ଆରମ୍ଭ କରିଥିଲେ ।

୧୯୨୧ରେ ମହାତ୍ମା ଗାନ୍ଧୀ ସ୍ୱରାଜ୍ୟ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଅସହଯୋଗ ଆନ୍ଦୋଳନର ପ୍ରଚାର ଓ ପ୍ରସାର ପାଇଁ ଦେଶବ୍ୟାପୀ ଭ୍ରମଣ କରୁଥିଲେ । ଏହି କ୍ରମରେ ସେ ବ୍ରହ୍ମପୁରରେ ପହଞ୍ଚି ଶ୍ରୀ ମଧୁସୂଦନ ପାଣିଗ୍ରାହୀଙ୍କର ଆତିଥ୍ୟତା ସ୍ୱୀକାର କରିଥିଲେ । ବିଶ୍ୱନାଥଙ୍କ ଗାନ୍ଧିଜୀଙ୍କ ସହ ସାକ୍ଷାତ ହୋଇଥିଲା ବନ୍ଧୁ ମଧୁସୂଦନ ପାଣିଗ୍ରାହୀଙ୍କ ଘରେ । ଗାନ୍ଧିଜୀ ବିଶ୍ୱନାଥଙ୍କୁ ଅନୁରୋଧ କରିଥିଲେ ନିଜ ନ୍ୟାୟିକ ବୃତ୍ତିକୁ ଅନ୍ତତଃ ଏକ ବର୍ଷ ପାଇଁ ବର୍ଜନ କରିବାକୁ । ସେ ବିଶ୍ୱାସ କରୁଥିଲେ ସରକାର ବିରୋଧୀ ବର୍ଷକର ଅସହଯୋଗ ବିଦେଶୀ ଶାସକଙ୍କୁ ଦେଶଛାଡ଼ି ଚାଲିଯିବାକୁ ବାଧ୍ୟ କରିବ । ବିଶ୍ୱନାଥ ଏଥିରେ ବିଶ୍ୱାସ କରୁନଥିଲେ ମଧ୍ୟ ଗାନ୍ଧିଜୀଙ୍କ ପ୍ରତି ସମ୍ମାନ କାରଣରୁ, ଏଥିରେ ରାଜି ହୋଇଥିଲେ ଏବଂ ନିଜ ରୋଜଗାର ଓ ପରିବାରର ପ୍ରତିପୋଷଣ କଥା ଭୁଲି କୋର୍ଟ ଏବଂ ନିଜ ବୃତ୍ତି ବର୍ଜନ କରିଥିଲେ ।

ଏହା ପୂର୍ବରୁ ଜୁଲାଇ ୧୯୨୦ରେ ବିଶ୍ୱନାଥ ମାନ୍ଦ୍ରାଜ ହାଇକୋର୍ଟରେ ମଧ୍ୟ ନିଜ ବୃତ୍ତି ଆରମ୍ଭ କରିଥିଲେ । ଏହା ପଛରେ ମଧ୍ୟ ତାଙ୍କର ଉଦ୍ଦେଶ୍ୟ ଥିଲା ମହତ । ସେ ମାନ୍ଦ୍ରାଜରେ ରହି ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କୁ ନ୍ୟାୟ ଦେବାରେ ନିଜକୁ ନିୟୋଜିତ କରିଥିଲେ । ଏହାଛଡ଼ା ବିଭିନ୍ନ ସମୟରେ ସେ ଓଡ଼ିଆମାନଙ୍କ ଦାବୀକୁ ଉପରିସ୍ଥ ଅଧିକାରୀମାନଙ୍କ ଆଗରେ ଉପସ୍ଥାପିତ କରୁଥିଲେ ।

ଏହି ସମୟରେ ବିଚ୍ଛିନ୍ନାଞ୍ଚଳ ପାଇଁ ସେ ବିଭିନ୍ନ ସମାଜ ଉପଯୋଗୀ କାର୍ଯ୍ୟକ୍ରମରେ ମଧ୍ୟ ଅତ୍ୟନ୍ତ କର୍ମଠ ଭାବରେ ଯୋଗ ଦେଉଥିଲେ । ଗଞ୍ଜାମର ପଣ୍ଡିତ ସଭାରେ ଗଞ୍ଜାମର ପ୍ରତିନିଧି ରୂପେ ଉତ୍କଳ ସମ୍ମିଳନୀରେ ଏବଂ ଖଲିକୋଟ କଲେଜ କମିଟିର ସଭ୍ୟ ରୂପେ ଯୋଗଦାନ କରି ନିଜ କାର୍ଯ୍ୟ ସୁଚାରୁ ରୂପେ ସମାହିତ କରିଥିଲେ । ଅବଶ୍ୟ ତାଙ୍କର ସେସମୟର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟଥିଲା ଦେଶ ମିଶ୍ରଣ ପ୍ରସଙ୍ଗକୁ ବାରମ୍ବାର ଉତ୍ଥାପନ କରିବା । ୧୯୨୧ ମସିହା ଫେବୃଆରୀ ମାସରେ ଗଞ୍ଜାମ ଓଡ଼ିଆ ସମାଜ ଏକ ବେସରକାରୀ କମିଶନ ଗଠନ କରିଥିଲେ । ଏହାର ଉଦ୍ଦେଶ୍ୟ ଥିଲା, ଭାଷା ଅନୁସାରେ ମାନ୍ଦ୍ରାଜ ପ୍ରଦେଶର କେଉଁ ଅଞ୍ଚଳ ଓଡ଼ିଶା ସଙ୍ଗେ ମିଶିବା ପାଇଁ ଉପଯୁକ୍ତ, ତାହା ନିର୍ଣ୍ଣୟ କରିବା । ଏହି କମିଶନର ସଭାପତି ରୂପେ ବାରିଷ୍ଟର ବିଶ୍ୱନାଥ ମିଶ୍ର ମନୋନୀତ ହୋଇଥିଲେ ଏବଂ ତୁରନ୍ତ ନିଜର କାର୍ଯ୍ୟ ଆରମ୍ଭ କରିଥିଲେ । ଏହି କାର୍ଯ୍ୟକ୍ରମ ଅନ୍ତର୍ଗତ ୧୯୨୧ ମସିହାର ମାର୍ଚ୍ଚ ମାସରେ ସେ ମଞ୍ଜୁଷା, ସୋମପେଟା, ବାରୁଆ, ଜଳନ୍ତର, ଉରଳା, ଟିକିଲି ଓ ପାରଳାଖେମୁଣ୍ଡି ଆଦି ଗସ୍ତ କରି ଦେଶ ମିଶ୍ରଣ ସଂପର୍କୀୟ ଜନମତ ସଂଗ୍ରହ କରିଥିଲେ । ଏହାଛଡ଼ା, ବାରିଷ୍ଟର ମିଶ୍ର ଗଞ୍ଜାମ ଜିଲ୍ଲାର ବିଭିନ୍ନ ଡେପୁଟେସନ୍‌ରେ ଯୋଗଦାନ କରି ଓଡ଼ିଆ ଦେଶ ମିଶ୍ରଣ ବିଷୟ ଉପସ୍ଥାପନ କରିବାରେ ନେତୃତ୍ୱ ନେଉଥିଲେ ।

ଓଡ଼ିଶା ଏକତ୍ରିକରଣ ଆନ୍ଦୋଳନରେ ବାରିଷ୍ଟର ମିଶ୍ରଙ୍କର ଅବଦାନ ଅତୁଳନୀୟ । ୧୯୨୪ ମସିହାରେ ଭାରତ ସରକାରଙ୍କ ଦ୍ୱାରା ଗଠିତ ସି.ଏଲ୍. ଫିଲିପ୍ ଏବଂ ଏ.ସି.ଡଫ୍ (ଫିଲିପ୍ ଡଫ୍) କମିଟି ଉପାନ୍ତ ଅଞ୍ଚଳ ଗସ୍ତ କରି ଓଡ଼ିଆଭାଷୀ ଅଞ୍ଚଳର ଜନମତ ଓଡ଼ିଶାର ଏକତ୍ରିକରଣ ସପକ୍ଷରେ ବା ନୁହେଁ ନିର୍ଦ୍ଧାରଣ କରିବା ପାଇଁ କାର୍ଯ୍ୟକ୍ଷମ ହୋଇଥିଲା । ଏହି କମିଟିର କାର୍ଯ୍ୟ ନିର୍ବାହର ଦାୟିତ୍ୱ ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ ଉପରେ ନ୍ୟସ୍ତ ହୋଇଥିଲା । କମିଟିର ଅନ୍ତିମ ରିପୋର୍ଟରେ ବିଶ୍ୱନାଥଙ୍କ ଅଦମ୍ୟ ନିଷ୍ଠା ଓ ପ୍ରଗାଢ଼ ଅଧ୍ୟବସାୟର ପ୍ରଭାବ ମଧ୍ୟ ପରିଲକ୍ଷିତ ହୋଇଥିଲା ।

୧୯୨୯ ମସିହାରେ ସାଇମନ କମିଶନ ଓଡ଼ିଶା ପ୍ରଦେଶ ଗଠନ କାର୍ଯ୍ୟ ପାଇଁ ଏକ ସବ୍‌କମିଟି ଗଠନ କରିଥିଲେ । ସେହି କମିଟିର ଅଧ୍ୟକ୍ଷ ଥିଲେ ମେଜର୍ କ୍ଲିମେଣ୍ଟ୍ ଆଟ୍‌ଲ (ଯେ ପରବର୍ତ୍ତୀ ସମୟରେ ବ୍ରିଟେନର ପ୍ରଧାନମନ୍ତ୍ରୀ ହୋଇଥିଲେ) । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ବିଷୟରେ ଏହି ସବ୍‌କମିଟି ଓଡ଼ିଶାର ଉପାନ୍ତ ଅଞ୍ଚଳ ସବୁ ଗସ୍ତ କରିଥିଲେ ଏବଂ ଅନେକ ସ୍ଥାନରେ ଓଡ଼ିଆଭାଷୀମାନଙ୍କଠାରୁ ଏବଂ ମିଶ୍ରଣ ଆନ୍ଦୋଳନ ବିରୋଧୀଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲେ । ଆଟ୍‌ଲି ବିଶାଖାପାଟଣାଠାରେ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଥିବା

ଓଡ଼ିଆମାନଙ୍କ ପ୍ରତିନିଧିମାନଙ୍କ ସହ ଦେଖା କରିଥିଲେ । ଏହି ପ୍ରତିନିଧି ଦଳର ନେତୃତ୍ୱ ଯଦିଓ ଜୟପୁରର ଭବିଷ୍ୟତ ରାଜା ବିକ୍ରମ ଦେବ ବର୍ମା ନୀତିଗତ ଭାବେ ନେଇଥିଲେ କିନ୍ତୁ ଏହାର ଅସଲ ପ୍ରଧାନ ମୁଖପାତ୍ର ଥିଲେ ବାରିଷ୍ଟର ବିଶ୍ୱନାଥ ମିଶ୍ର । ସେ ହିଁ ସମସ୍ତ ସ୍ମାରକପତ୍ର ପ୍ରସ୍ତୁତ କରିଥିଲେ । ପରେ ଯେତେବେଳେ ଜଣାପଡ଼ିଲା ଯେ, ଆଟ୍‌ଲି କମିଟି ମାନ୍ଦ୍ରାଜର ସବୁ ଓଡ଼ିଆଭାଷୀ ଅଞ୍ଚଳକୁ ମିଶାଇବାକୁ ସୁପାରିଶ କରିନାହିଁ, ଶ୍ରୀ ମିଶ୍ର ଅତ୍ୟନ୍ତ ବ୍ୟଥିତ ହୋଇ 'ମାନ୍ଦ୍ରାଜ ମେଲ୍', 'ହିନ୍ଦୁ' ଓ ମାନ୍ଦ୍ରାଜରୁ ପ୍ରକାଶିତ ଅନ୍ୟାନ୍ୟ ଇଂରାଜୀ କାଗଜମାନଙ୍କର ନିଜର ପ୍ରତିବାଦ ସ୍ୱରୂପ ଅନେକ ଲେଖା ପ୍ରକାଶିତ କରିଥିଲେ ।

୧୯୨୨ ମସିହାର ପ୍ରାରମ୍ଭ କାଳରେ ବାରିଷ୍ଟର ବିଶ୍ୱନାଥ ପ୍ରଥମ କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ । ଏହା ଥିଲା ଅୟମାରମ୍ଭ ମାତ୍ର । ପ୍ରଥମ ପଦାର୍ପଣରେ ହିଁ ବାରିଷ୍ଟର ମିଶ୍ର ବ୍ୟବସ୍ଥାପକ ଭାବେ ନିଜର ପ୍ରତିଭା ଚମତ୍କାରଭାବେ ପ୍ରଦର୍ଶନ କରିଥିଲେ । ଏହି ପ୍ରଥମ ପଦାର୍ପଣର କିଛି ଝଲକ ନିମ୍ନରେ ଦିଆଯାଇଛି । ଏହା ଥିଲା ୧୯୨୨ ମସିହା ମାର୍ଚ୍ଚ ୧୫ ତାରିଖରେ ବଜେଟ ଉପରେ ବାରିଷ୍ଟର ମିଶ୍ରଙ୍କ ଦ୍ୱାରା ଦିଆଯାଇଥିବା ପ୍ରଥମ ଭାଷଣ । ସେ କହିଥିଲେ, ବାଚସ୍ପତି ମହୋଦୟ, ମୁଁ ଏହି ସଂଶୋଧନ ପ୍ରସ୍ତାବକୁ ସମର୍ଥନ କରିବାକୁ ଛିଡ଼ା ହୋଇଛି । ମୁଁ ଏହି ବ୍ୟବସ୍ଥା ସଭା ପାଇଁ ନୂଆ ଲୋକ । ତେଣୁ ମନରେ ଭାଗେ ସଂକୋଚ ଶଙ୍କା ରହିଛି କିନ୍ତୁ ଆଉ ଭାଗେ ରହିଛି ଉଚ୍ଚ ଆତ୍ମବିଶ୍ୱାସ । ଜଣେ ନବାଗତ ଭାବରେ ମୋର କୌଣସି ତ୍ରୁଟି ଥିଲେ ମୋତେ ମାର୍ଜନା କରିବେ ବୋଲି ମୁଁ ଆଶା କରେ । ଲବଣ ଟିକସ ବୃଦ୍ଧିକୁ ଘୋର ବିରୋଧ କରି ପୁଣି ସେ କହିବା ଆରମ୍ଭ କଲେ, ଯାହାର ଶହେ ଅଛି, ତା'ଠାରୁ ପଚାଶ ଟଙ୍କା ନେଲେ ତାକୁ ନିଶ୍ଚୟ ବାଧିବ କିନ୍ତୁ ଯିଏ ଶୂନ୍ୟରେ ଚଳୁଛି ତା'ଠାରୁ ନେଲେ ତାକୁ ବାଧିବ ବା କ'ଣ ? ତା'ପରେ ଭାରତର ଦାରିଦ୍ର୍ୟ ଓ ଦୈନ୍ୟ କଥା କହୁ କହୁ, ବିଶ୍ୱନାଥଙ୍କର ବିଲାତର ଚାଲିଚଳଣ ଆଚାର ବ୍ୟବହାର ସ୍ମରଣକୁ ଆସିଗଲା । ଏହାପରେ ସେ ଗମ୍ଭୀର ଭାବେ କହିବାକୁ ଲାଗିଲେ, ମହାଶୟ, ମୁଁ ତ ଅବଶ୍ୟ କହିବି ଯେ ଯେଉଁ ସାହେବମାନେ ଏ ଭାରତକୁ ଆସିଛନ୍ତି, ସେମାନେ ଆପଣାକୁ ଭାରତୀୟ ଭାବରେ ତିଆରି କରିବେ କ'ଣ, ସେମାନେ ଭାରତବାସୀଙ୍କୁ ସାହେବ ବନାଇ ସାରିଲେଣି । ....... ସାହେବଙ୍କର ଷ୍ଟାଣ୍ଡାର୍ଡ଼ ଆଉ ଭାରତୀୟଙ୍କ ଷ୍ଟାଣ୍ଡାର୍ଡ ଭିତରେ ଆକାଶ ପାତାଳ ପ୍ରଭେଦ । ସେମାନଙ୍କର ଗୋଟାଏ ଡିନରକୁ ଦୁଇ ଟଙ୍କାରୁ ପାଞ୍ଚ ଟଙ୍କା ଯାଏଁ ଖର୍ଚ୍ଚ କିନ୍ତୁ ସରକାରଙ୍କର ଏକଥା କ'ଣ ଗୋଚରକୁ ଆସିଛି ଯେ ଜଣେ ଭାରତୀୟ ଦୁଇଟା ତିନିଟା ଟଙ୍କାରେ ସାରା ମାସଯାକ ଚଳେ । ତେଣୁ ସବୁତକ ଦୋଷ ରହିଲା ବ୍ରିଟିଶ ସରକାରଙ୍କ ବୁଝାମଣାରେ । ସେ ପୁଣି କହିଲେ, ଇଂରେଜ ଲୋକେ ଏପରିକି ଅବସରପ୍ରାପ୍ତ ଲାଟ୍, ଛୋଟ ଲାଟ୍ ଆଉ ବଡ଼ ବଡ଼ ନୌକରମାନେ ବିଲାତକୁ ଗଲେ ପେନି ବସ୍‌ରେ ଯାଆନ୍ତି ବା ପେନି ଟ୍ରାମ୍‌ରେ ଚଢ଼ି ଯାଆନ୍ତି । କିନ୍ତୁ ଏହି ବ୍ୟକ୍ତିମାନେ ଭାରତକୁ ଆସିଲା କ୍ଷଣି ସେମାନଙ୍କର ତିନି ତିନିଟା ଫାଷ୍ଟ କ୍ଲାସ ଟିକଟ ଚାହିଦା । ଭାରତରେ ଜଣେ ଛୋଟ ଲାଟ୍ କୁଆଡ଼େ ଗସ୍ତରେ ବାହାରିଲେ ତାଙ୍କ ପାଇଁ ଗୋଟାଏ ବେଟାଇମ୍ ସ୍ପେଶାଲ ରେଳଗାଡ଼ି ଦରକାର । ମୁଁ ଅବଶ୍ୟ ମାନୁଛି ଇଂରେଜୀ ଲୋକେ ଖୁବ୍ କାମିକା, ଖୁବ୍ ବ୍ୟାବହାରିକ ବୁଦ୍ଧିବାଲା ଲୋକ, ଖୁବ୍ ଭଦ୍ର । ବିଲାତି ଲୋକପରି ବନ୍ଧୁ, ସାଙ୍ଗସାଥୀ, ସହଯୋଗୀ ବା ଦରଦୀ ମିଳିବା କଷ୍ଟ କିନ୍ତୁ ଦୁର୍ଭାଗ୍ୟର କଥା ଭାରତରେ ଇଂରେଜୀ ଲୋକ ଏକ ସ୍ୱତନ୍ତ୍ର ଜୀବ । ସେ ବିଲାତରେ ପ୍ରଚଳିତ ଇଂରେଜ ଲୋକ ନୁହେଁ କିମ୍ବା ବିଲାତରୁ ଆସିଥିବା ଇଂରେଜ ଲୋକ ନୁହେଁ । ଅବଶ୍ୟ ମୁଁ କହୁନାହିଁ ଯେ ସେ ମନୁଷ୍ୟ ଇତର ଗୋଟାଏ ଜୀବ ଭାବରେ ରୂପାନ୍ତରିତ ହୋଇଯାଏ କିନ୍ତୁ ମହାଶୟ, ସେ ହେଲେ ହାକିମ । ଆମକୁ ତେଣୁ ଇଂରେଜ ଶବ୍ଦ ଭଣ୍ଡାରକୁ ଅଲଗା ଭାବରେ ବୁଝିବାକୁ ହେବ । ଆମକୁ ଧରିନେବାକୁ ହେବ ସେ ଇଂରାଜୀ ଲୋକଙ୍କର ଭାରତ ବିଷୟରେ ଅଭିଧାନ ତାଙ୍କର ଦେଶର ପ୍ରଚଳିତ ଅଭିଧାନର ଓଲଟା ।

ମହାଶୟ, ମୁଁ ଆପଣଙ୍କ ଆଗରେ ଗୋଟିଏ ଉଦାହରଣ ରଖୁଛି । ଆପଣମାନେ ସମସ୍ତେ ଜାଣନ୍ତି ମହାଭାଗ ବଡ଼ଲାଟ୍ ସାହେବ ଆପଣଙ୍କୁ କିଛି ଲେଖିଲାବେଳେ ଶେଷରେ ଲେଖନ୍ତି 'ତୁମର ସବୁଠାରୁ ଆଜ୍ଞାଧୀନ ଭୃତ୍ୟ ।'ଏହି ବାକ୍ୟାଂଶର ଅର୍ଥ କ'ଣ ? ଆଜ୍ଞାଧୀନ ଭୃତ୍ୟ ? ଆପଣ ଯଦି ସେମାନଙ୍କୁ ଆକୁତି ଅନୁଯୋଗ କରିବେ, ଫଲଣା କଥା କରନ୍ତୁ ନାହିଁ, ସେମାନେ

ଆପଣଙ୍କ ଇଚ୍ଛା ବିରୁଦ୍ଧରେ ସେହି କାର୍ଯ୍ୟଟି ହିଁ କରିବେ। ତେବେ ଏମାନେ କି କିସମର? ଏହି ମାନ୍ୟବର ସରକାରୀ ମେମ୍ବରମାନେ କି ପ୍ରକାରର ଆଜ୍ଞାଧୀନ ଭୃତ୍ୟ? ମହାଭାଗ, ବଡ଼ଲାଟ୍ ଏହି ଗୃହର ସବୁ ପ୍ରସ୍ତାବକୁ ନାକଚ କରିଦବାର କ୍ଷମତା ରଖିଛନ୍ତି। ଯେତେବେଳେ ସିଏ ଇଚ୍ଛା କରିବେ ସେତେବେଳେ ସେ ଭିଟୋ କ୍ଷମତା ପ୍ରୟୋଗ କରିପାରିବେ। ଏଣେ ସେ ହେଉଛନ୍ତି 'ସବୁଠାରୁ ଆଜ୍ଞାଧୀନ ଭୃତ୍ୟ।' ଯଦି ତାଙ୍କର କଥାଟା ବିଲାତରେ ଇଂରାଜୀ ଅଭିଧାନକୁ ଯେପରି ଭାବରେ ବୁଝନ୍ତି, ସେପରି ଭାରତରେ ବୁଝାଯାଉ ବୋଲି ବିଚାରୁ ଥାଆନ୍ତେ, ତେବେ ବଡ଼ଲାଟ୍ ମହାଭାଗ ଲେଖନ୍ତେ ମହାମହିମ ସମ୍ରାଟ୍‌ଙ୍କର ଅଜ୍ଞାଧୀନ ଭୃତ୍ୟ, ନଚେତ୍ ଭାରତ ସରକାରଙ୍କର ଆଜ୍ଞାଧୀନ ଭୃତ୍ୟ.....।

ଏତିକି ବେଳକୁ ବାଚସ୍ପତି ବିଶ୍ୱନାଥଙ୍କୁ ଅଟକାଇ ଥିଲେ। ବିଶ୍ୱନାଥ କଥାର ମୋଡ଼ ବଦଳାଇ କହିଥିଲେ, ମୁଁ କହୁଥିଲି, ସବୁଠାରୁ ଆଜ୍ଞାଧୀନ ଭୃତ୍ୟ ବୋଲି ନିଜକୁ କହିବା କିନ୍ତୁ ସବୁଠାରୁ ଅତ୍ୟାଚାରୀ ପ୍ରଭୁ ଭାବରେ ବ୍ୟବହାର କରିବାର ଢ଼ଙ୍ଗ ଭାରତରେ ଇଂରେଜ ଅଫିସରମାନେ ଛାଡ଼ନ୍ତୁ।

ଏହାଥିଲା ବିଶ୍ୱନାଥଙ୍କର ପ୍ରଥମ ବକ୍ତୃତା। ଏହିଠାରୁ ସ୍ପଷ୍ଟ ଜାଣିହୁଏ, କେତେ ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ ବିଶ୍ୱନାଥ। ବ୍ୟବସ୍ଥାପକ ଭାବେ ସେ ସବୁ ଅଧିବେଶନରେ ଏହି ଛାପ ଛାଡ଼ିଯାଇଥିଲେ।

ଏହି ପ୍ରଥମ କେନ୍ଦ୍ରୀୟ ସଭାରେ ବାରିଷ୍ଟର ମିଶ୍ର ଓଡ଼ିଶା ଏକୀକରଣ ପ୍ରସ୍ତାବ ଆଗତ କରିଥିଲେ। ଏହି ପ୍ରସ୍ତାବଟି ଥିଲା, ବର୍ତ୍ତମାନ ବିହାର, ଓଡ଼ିଶା, ମାନ୍ଦ୍ରାଜ, କେନ୍ଦ୍ର ପ୍ରଦେଶ ଏବଂ ବଙ୍ଗ ଏପରି ଚାରୋଟି ପ୍ରାଦେଶିକ ସରକାରଙ୍କ ଦ୍ୱାରା ଶାସିତ ଓ ରାଜନୈତିକ ଓଡ଼ିଶା ସହିତ ଭୌଗଳିକ ଓ ଐତିହାସିକ ଉଭୟ ପ୍ରକାରେ ସଂଲଗ୍ନ ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକତ୍ରକରି ଏକ ଶାସନାଧୀନରେ ଆଣି ଆବଶ୍ୟକ ମତେ ଗଭର୍ଣ୍ଣର ବା ଡେପୁଟି ଗଭର୍ଣ୍ଣରଙ୍କ ହେପାଦସ୍ତରେ ରଖିବା ପାଇଁ, ସଭାଧିଷ୍ଠିତ ଭାରତ ସଚିବ ଓ ପ୍ରବଳ ପ୍ରତାପୀ ସମ୍ରାଟ୍‌ଙ୍କର ମଞ୍ଜୁର ଯଥାଶୀଘ୍ର ଆଣିବା ପାଇଁ ଏହି ବ୍ୟବସ୍ଥା ସଭା ସଭାଧିଷ୍ଠିତ ଗଭର୍ଣ୍ଣର ଜେନେରାଲଙ୍କୁ ସୁପାରିଶ କରୁଅଛନ୍ତି।

ଏତଦ୍ ବ୍ୟତୀତ ଏହି ସଭାରେ ଭାରତୀୟ ଦଣ୍ଡବିଧି ଆଇନର ୧୪୫ ଓ ୧୪୬ ଦଫାରେ ତାଙ୍କର ବିଚାର ବିତର୍କ ଏବେବି ଆଇନର ବିଧାନ ହୋଇରହିଛି। ୧୯୨୩ ମସିହା ଫେବୃଆରୀ ତିନି ତାରିଖରେ ବାରିଷ୍ଟର ମିଶ୍ର ସେତେବେଳର ବହୁ ଗୁରୁତ୍ୱପୂର୍ଣ୍ଣ Worksman Compensation Bill ଆଙ୍କ୍ଟ ହେବାର ପର୍ଯ୍ୟାୟରେ ଗୋଟିଏ ସଂଶୋଧନ ପ୍ରସ୍ତାବ ଆଣିଥିଲେ, ଯାହା ବିଶଦ୍ ଭାବେ ସଭାରେ ଆଲୋଚନା ହୋଇଥିଲା। ଅନେକ ବାଦ ବିବାଦ ପରେ ତାଙ୍କର ସଂଶୋଧନ ପ୍ରସ୍ତାବଟି ଗୃହୀତ ହୋଇଥିଲା। ଏହାଛଡ଼ା, ଭାରତୀୟ ଦଣ୍ଡବିଧି ଆଇନର ୫୨୬ ଦଫା ଓ ଭାରତୀୟ ପିଙ୍ଗଳ କୋର୍ଡର ୩୬୬ ଦଫାର ତିନି ଉପଦଫା ଉପରେ ସେ ଫେବୃଆରୀ ୧୯୨୩ର ଶେଷ ଦୁଇ ସପ୍ତାହରେ ତତ୍କାଳିକ ଅବସ୍ଥା ଦୃଷ୍ଟିରୁ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ ପ୍ରସ୍ତାବ ଆଗତ କରିଥିଲେ। ସେହିବର୍ଷ ଜାନୁଆରୀ ୨୯ ତାରିଖରେ ସେ ଭାରତର ଖାଦାନ ବିଲ୍‌ର ଜଏଣ୍ଟ କମିଟି ରିପୋର୍ଟର ଆଲୋଚନା ପ୍ରସଙ୍ଗରେ ମଧ୍ୟ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ ପ୍ରସ୍ତାବ ଦେଇଥିଲେ। ୧୯୨୩ ମସିହା ମାର୍ଚ୍ଚ ୨୧ ତାରିଖରେ ଆଗତ ସରକାରୀ 'ମାଲ୍-ଖୋରଡ଼ା ଓ ଗଉନ୍ତିଆ ଗ୍ରାମୀଣ ଆଇନ ବିଲ୍' ଉପରେ ବାରିଷ୍ଟର ମିଶ୍ରଙ୍କର ପ୍ରାଣସ୍ପର୍ଶୀ ଓଜସ୍ୱିନୀ ଭାଷଣ ଏବେବି ଶିହରଣ ଜଗାଇଥାଏ। ୧୯୨୦ ସେପ୍ଟେମ୍ବର ମାସରେ ପ୍ରସ୍ତାବିତ ଦେଶୀୟ ରାଜ୍ୟର 'ରାଜନ୍ୟବର୍ଗଙ୍କର ରକ୍ଷାକବଚ ଆଇନ' ଉପରେ ବିଶ୍ୱନାଥଙ୍କ ଭାଷଣ, ଯୁକ୍ତି ଓ ଯଥାର୍ଥତା ଦୃଷ୍ଟିରୁ ଅତ୍ୟନ୍ତ ଉଚ୍ଚକୋଟୀର ହୋଇଥିଲା ଓ ତାଙ୍କୁ ସେ ଥରର ବ୍ୟବସ୍ଥା ସଭାରେ ଜଣେ ଅଗ୍ରଣୀ ପାର୍ଲିମେଣ୍ଟେରିଆନ ଭାବରେ ପ୍ରତିଷ୍ଠିତ କରିଥିଲା। ଏହିପରି ଭାବେ ପ୍ରଥମ କେନ୍ଦ୍ରୀୟ ବ୍ୟବସ୍ଥା ସଭାରେ ବାରିଷ୍ଟର ବିଶ୍ୱନାଥ ମିଶ୍ର ଜଣେ ଅତ୍ୟନ୍ତ ବ୍ୟସ୍ତବହୁଳ ବ୍ୟବସ୍ଥାପକ ଭାବେ ନିଜକୁ ପରିଚିତ କରାଇ ପାରିଥିଲେ।

ଏହାପରେ ୧୯୨୪ ମସିହାର ଦ୍ୱିତୀୟ ବ୍ୟବସ୍ଥାପକ ସଭା ନିର୍ବାଚନରେ ସ୍ୱରାଜ ପାର୍ଟି (କଂଗ୍ରେସ)ର ପ୍ରବଳ ଲହରୀ ସତ୍ତ୍ୱେ ଅଣକଂଗ୍ରେସୀ ବାରିଷ୍ଟର ମିଶ୍ର ମାତ୍ର ଗୋଟିଏ ଭୋଟରେ ହାରିଯାଇଥିଲେ। ତୃତୀୟ ବ୍ୟବସ୍ଥା ସଭାର ସ୍ୱାତନ୍ତ୍ର୍ୟ ଥିଲା କଂଗ୍ରେସୀ ସଭ୍ୟମାନଙ୍କର ବଡ଼ ଆକାରରେ ଇସ୍ତଫା।

୧୯୨୭ ଜାନୁଆରୀଠାରୁ ୧୯୩୦ ବଜେଟ ଅଧିବେଶନ ଯାଏଁ ଏହି ସଭା ଚାଲିଥିଲା । ଏହି ସଭାର ଆୟୁଷ ଅନ୍ୟ ସଭାମାନଙ୍କ ତୁଳନାରେ ଏକବର୍ଷ ବଢ଼ିଯାଇଥିଲା । କାରଣ ୧୯୨୯ର ମଧ୍ୟଭାଗରେ ତତ୍‌କାଳୀନ ଭାଇସରୟ ଲର୍ଡ଼ ଇରଉଇନ୍ ମେ ମାସରେ ଘୋଷଣା କରିଥିଲେ ଯେ, ସାଇମନ କମିସନ ରିପୋର୍ଟ ପ୍ରସ୍ତୁତ ହୋଇନଥିବାରୁ ୧୯୨୯ ଶରତ ଋତୁରେ ହେବାକୁ ଥିବା ଭାରତୀୟ ନିର୍ବାଚନ ସ୍ଥଗିତ ରଖାଗଲା । ୧୯୩୦ ଜାନୁଆରୀ ମାସରେ ଚାଳିଶ ଜଣ କଂଗ୍ରେସୀ ସଦସ୍ୟଙ୍କ ମଧ୍ୟରୁ ୨୭ ଜଣ କାର୍ଯ୍ୟକାରୀ କମିଟିର ନିର୍ଦ୍ଦେଶକ୍ରମେ ଇସ୍ତଫା ଦେଇଥିଲେ । ତେବେବି ଆହୁରି ୧୩ ଜଣ ସଦସ୍ୟ ଇସ୍ତଫା ଦେଇନଥିଲେ । ପରବର୍ତ୍ତୀ ସମୟରେ ଅବଶ୍ୟ ଏମାନଙ୍କ ମଧ୍ୟରୁ ଅନେକ ଇସ୍ତଫା ଦେଇଥିଲେ । ଇସ୍ତଫା ଦେଇଥିବା ସଭ୍ୟମାନଙ୍କ ମଧ୍ୟରେ ଥିଲେ ପଣ୍ଡିତ ନୀଳକଣ୍ଠ ଦାଶ । ବାରିଷ୍ଟର ବିଶ୍ୱନାଥ ନୀଳକଣ୍ଠଙ୍କ ସ୍ଥାନରେ ଦ୍ୱିତୀୟ ଥର ପାଇଁ ବଡ଼ଲାଟ୍ ସଭାର ସଭ୍ୟ ରୂପେ ଉପନିର୍ବାଚନରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ଏହି ସମୟ କିନ୍ତୁ ଥିଲା ଘନଘଟାଚ୍ଛନ୍ନ । ୧୯୨୯ ଅପ୍ରେଲ ୮ ତାରିଖରେ ଶ୍ରମିକମାନଙ୍କର ଟ୍ରେଡ୍ ୟୁନିୟନ ଅଧିକାର ବିରୁଦ୍ଧରେ ଯେଉଁ 'କଳା କାନୁନ' ଆଗତ ହୋଇଥିଲା, ତାହା ବେସରକାରୀ ସଭ୍ୟମାନଙ୍କର ପ୍ରବଳ ବିରୋଧ ସତ୍ତ୍ୱେ ଗୃହୀତ ହୋଇଯାଇଥିଲା । ଗୃହୀତ ହେବାର ଘୋଷଣା ସଙ୍ଗେ ସଙ୍ଗେ ଦର୍ଶକ ମଞ୍ଚରୁ ଦୁଇଟି ବୋମା ପଡ଼ି ସରକାରୀ ସଭ୍ୟମାନେ ବସିଥିବା ସ୍ଥାନରେ ବିସ୍ଫୋରଣ ଘଟିଥିଲା । ଏହି ଘଟଣାରେ ଭଗତ ସିଂହ ଓ ବଟୁକେଶ୍ୱର ଦତ୍ତ ଗିରଫ ହୋଇଥିଲେ ।

ପ୍ରାୟ ସାତ ବର୍ଷ ପରେ ଜୁଲାଇ ୯ ତାରିଖ ୧୯୩୦ରେ ବାରିଷ୍ଟର ବିଶ୍ୱନାଥ ସ୍ୱାଧୀନ ସଦସ୍ୟ ବେଞ୍ଚରୁ ଭାରତର ଭାଇସରାୟ ଲର୍ଡ଼ ଇରଉଇନଙ୍କ ଭାଷଣ ଶୁଣିଥିଲେ । ସାଇମନ ରିପୋର୍ଟ ଆସି ସାରିଥିଲା । ଅନେକେ ଏଇ ରିପୋର୍ଟକୁ ବିପଜ୍ଜନକ ଓ ଅନିଷ୍ଟକର ବୋଲି ଘୋଷଣା କରିଥିଲେ । ଏହା ସତ୍ତ୍ୱେ ଏହି ରିପୋର୍ଟରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଗୋଟିଏ ଧୂଆଁଳିଆ ସୁପାରିଶ ରହିଥିଲା । ଏଣୁ ବିଶ୍ୱନାଥଙ୍କ ପାଇଁ ଏହି ରିପୋର୍ଟ ମଧ୍ୟ ସ୍ୱାଗତଯୋଗ୍ୟ ଥିଲା । ଏଣୁ ତାଙ୍କ ଭାଷଣରେ ଅତ୍ୟନ୍ତ ସତର୍କତା ଓ ସଂଯମ ଅବଲମ୍ବନ କରିଥିଲେ । ସେ ସାଇମନ କମିସନର ସୁପାରିସ ପ୍ରସଙ୍ଗରେ, ରିପୋର୍ଟର ଦ୍ୱିତୀୟ ଖଣ୍ଡର ୩୨୧ ପୃଷ୍ଠାରେ ଉଲ୍ଲିଖିତ ପ୍ରାଦେଶିକ ଇଲାକାର ପୁର୍ନବଣ୍ଟନର ଔଚିତ୍ୟ ଏବଂ ଏହାର ଶୀଘ୍ର ବିଚାର ବିଷୟକୁ ସୂଚୀତ କରି କହିଥିଲେ, ଆମ୍ଭେମାନେ ଚାରୋଟି ପ୍ରଦେଶରେ ବର୍ତ୍ତମାନ ମାଇନରିଟି ବା ସଂଖ୍ୟାଲଘୁ । ଏ ଘୋଷଣା ସତ୍ତ୍ୱେ ଆମ ପାଇଁ ଏପର୍ଯ୍ୟନ୍ତ କ'ଣ କରାଯାଇଛି ? ୧୯୦୩ରେ ଲର୍ଡ କର୍ଜନ ଘୋଷଣା କରିଥିଲେ ଯେ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ଗୋଟିଏ ପ୍ରଦେଶର ଶାସନାଧୀନ ହୋଇ ରହିବ । ପୁଣି ୧୯୧୭ରେ ମଣ୍ଟେଗ୍ୟୁ-ଚେମ୍ସଫୋର୍ଡ ରିପୋର୍ଟରେ କୁହାଗଲା ଯେ ଅଳ୍ପଦିନ ଭିତରେ ଏକ ନୂଆ ପ୍ରଦେଶ ଗଠିତ ହେବ । ଏବେ ସାଇମନ କମିସନ କହିଲେ ଏହି ପ୍ରଦେଶ ଅବିଳମ୍ବେ ଗଠିତ ହେବା ଉଚିତ । ଆମେ ଭାରତୀୟମାନେ, ଇଂରେଜ ଶବ୍ଦ ଓ ପ୍ରକାଶଭଙ୍ଗୀ ବିଷୟରେ ବେଶୀ ଅଭ୍ୟସ୍ତ ନୋହୁଁ । ବିଲାତ ଲୋକଙ୍କ ଭାଷାରେ ଅଳ୍ପଦିନ ପରେ, ମାନେ କେତେ ବର୍ଷ ପରେ ? କୋଡ଼ିଏ, ତିରିଶ ନା ଶହେ ବର୍ଷ ? ଆମ୍ଭେମାନେ ଏତେକ ବିଶ୍ୱାସ କରିବାକୁ ଶିଖିଛୁଁ ଯେ ଅବିଳମ୍ବେ ଅର୍ଥ ଅବିଳମ୍ବେ, ଶହେ ବର୍ଷ ପରେ ନୁହେଁ । ଟ୍ରେଜେରୀ ବେଞ୍ଚରେ ବସିଥିବା ସଦସ୍ୟମାନେ ଏହି ବିଷୟରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନାହାନ୍ତି । ସେମାନେ ଅବିଳମ୍ବେ ଏକ ଓଡ଼ିଶା ପ୍ରଦେଶ ଗଠନ ବିଷୟରେ ଏପର୍ଯ୍ୟନ୍ତ ଏଠାରେ କୌଣସି ପ୍ରସ୍ତାବ ଆଣିନାହାନ୍ତି । ତେଣୁ ମୋର ମତରେ ସ୍ଥାନୀୟ ସରକାରଗୁଡ଼ିକ ଓ କେନ୍ଦ୍ର ସରକାରଙ୍କର ଶାସନତନ୍ତ୍ରରେ ଯେତେ ଯାହା ସଂଶୋଧନ ହେଉ, ତାହା ଆମର ଓଡ଼ିଆ ଲୋକଙ୍କର କୌଣସି ଉପକାରରେ ଆସିବ ନାହିଁ । (ବ୍ୟବସ୍ଥାପକ ସଭାର ବିତର୍କାବଳି, ୧୦ ଜୁଲାଇ, ୧୯୩୦ ୪ର୍ଥ ଖଣ୍ଡ, ତିନି ନମ୍ବର, ସ୍ଥାନ – ସିମଳା)

୧୯୩୦ ସେପ୍ଟେମ୍ବର ମାସରେ ୪ର୍ଥ ବ୍ୟବସ୍ଥାପକ ସଭା ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏଥିରେ ବାରିଷ୍ଟର ବିଶ୍ୱନାଥ ମିଶ୍ର ତୃତୀୟ ଥର ପାଇଁ ସଭାକୁ ନିର୍ବାଚିତ ହୋଇଥିଲେ । ଚତୁର୍ଥ ବ୍ୟବସ୍ଥାପକ ସଭା ଥିଲା ବିଶ୍ୱନାଥଙ୍କ ପାଇଁ ଓଡ଼ିଶା ମିଶ୍ରଣ, ଓଡ଼ିଶାର ସୀମା କମିସନର ଦାବିର ବିତର୍କ ମଞ୍ଚ । ତାଙ୍କର ପ୍ରତ୍ୟେକ ଭାଷଣ, ବିତର୍କରେ ସେହି ବିଷୟ ପ୍ରତି ସେ ବାରମ୍ବାର

ଦୃଷ୍ଟି ଆକର୍ଷଣ କରୁଥିଲେ। ତାଙ୍କର ସମସ୍ତ ଭାଷଣରେ ସେ ଓଡ଼ିଶାର ପ୍ରାଚୀନ ଇତିହାସ, ଗୌରବମଣ୍ଡିତ ଐତିହ୍ୟ ବିଷୟରେ କହିଥିଲେ। ସ୍ପଷ୍ଟଭାବରେ କହିଲେ, ଅର୍ଥ ବିଲ୍‌କୁ ବିରୋଧ କରିବାର ଭାଷଣରେ ଓଡ଼ିଶାର ଇତିହାସ ଓ ଐତିହ୍ୟ ବର୍ଣ୍ଣନା କରିବାର ଅବକାଶ ନଥିଲା। ତଥାପି ବିଚକ୍ଷଣତା ଓ ଚତୁରତାର ସହିତ ସେ ଏହାର ଅବତାରଣା କରିଥିଲେ। ଓଡ଼ିଶା ଗଠନ ପାଇଁ ଓ ଓଡ଼ିଆ ଭାଷା ପାଇଁ ତାଙ୍କ ଆତୁରତା ଏତେ ବେଶୀ ଥିଲା ଯେ ତାଙ୍କର ସାଥୀ ସଦସ୍ୟମାନେ ତାଙ୍କୁ ମିଷ୍ଟର ଓଡ଼ିଶା ନାମରେ ଡାକିବା ଆରମ୍ଭ କରିଦେଇଥିଲେ।

ଭଗତ ସିଂ, ରାଜଗୁରୁ ଓ ସୁଖଦେବଙ୍କୁ ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖ ଗୋପନ ରାତ୍ରିରେ ସନ୍ଦେହଜନକ ପରିସ୍ଥିତିରେ ଫାଶୀ ଦେବାର ପରଦିନ ଅର୍ଥାତ୍ ମାର୍ଚ୍ଚ ୨୪ ତାରିଖ ଦିନ ବ୍ୟବସ୍ଥାପକ ସଭାର ବାତାବରଣ ବିକ୍ଷୁବ୍ଧ ହୋଇପଡ଼ିଥିଲା। ସେତେବେଳର ବିରୋଧୀଦଳ ଥିଲେ ଜାତୀୟବାଦୀ ଦଳ। ଏଥିରେ ବାରିଷ୍ଟର ବିଶ୍ୱନାଥ ମିଶ୍ର ସାମିଲ ଥିଲେ। ଏହି ଅବସରରେ ବାରିଷ୍ଟର ମିଶ୍ର କହିଥିଲେ, ମହାଶୟ, ଭାରତର ଏହି ତିନିଜଣ ମହାନ୍ ଦେଶପ୍ରେମୀ ଯୁବକଙ୍କର ଫାଶୀ ଦଣ୍ଡ ଭାରତର ସ୍ୱାଧୀନତା ଆନ୍ଦୋଳନ ପାଇଁ କେବଳ ଅପମାନ ନୁହେଁ, ଏହା ସମସ୍ତ ବ୍ରିଟିଶ ଶାସନ ପାଇଁ ଏକ କଳଙ୍କର ଟୀକା। ଏଭଳି ପରିସ୍ଥିତିରେ ଏହି ସଭାରେ ବିତର୍କ ଓ ଆଲୋଚନାରେ ଭାଗନେବାର କୌଣସି ମୂଲ୍ୟ ନାହିଁ। ଆଜି ଆମ୍ଭମାନଙ୍କର ନିର୍ବାଚନ ମଣ୍ଡଳୀର ଜନସାଧାରଣଙ୍କ ସମେତ ସମସ୍ତ ଭାରତବର୍ଷ ଶୋକରେ, କ୍ରୋଧରେ, ଅପମାନରେ ଜର୍ଜରିତ। ତେଣୁ ଏଭଳି ପରିସ୍ଥିତିରେ କୌଣସି ବିତର୍କରେ ଭାଗନେବା ଅବସ୍ଥାରେ ଆମ୍ଭେମାନେ ନାହୁଁ। ଏହାପରେ ସମସ୍ତ ଜାତୀୟବାଦୀ ଦଳ ନିଜ ନିଜର ଆସନ ଶୂନ୍ୟକରି ସଭାକକ୍ଷ ଛାଡ଼ି ବାହାରି ଯାଇଥିଲେ।

ଏହା ପରେ ଅଧିବେଶନ ପରେ ଅଧିବେଶନ ସେ ବିଭିନ୍ନ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମରେ ଓଡ଼ିଶାର ଇତିହାସକୁ ସୂଚାଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଉପରେ ଜୋରଦେଇ ବାରମ୍ବାର ବକ୍ତୃତାମାନ ଦେଉଥିଲେ। ଏପରିକି ଗୋଲ ଟେବୁଲ ବୈଠକରେ ଓଡ଼ିଶାର ପ୍ରତିନିଧିତ୍ୱ ହେବା ଉଚିତ ବୋଲି ଯୁକ୍ତି ବାଢ଼ିଥିଲେ। ୧୯୩୧ ମସିହା ନଭେମ୍ବର ୧୯ ତାରିଖ ଦିନ ଭାରତୀୟ ଅର୍ଥ ବିଲ୍ ଉପରେ ଭାଷଣ ଦେଇ ବିଶ୍ୱନାଥ ଭାରତର ପ୍ରଶାସନରେ ଉଚ୍ଚ ଅଫିସର ଓ ତଳିଆ କର୍ମଚାରୀମାନଙ୍କର ବେତନ ହାରର ତାରତମ୍ୟ ବିଷୟରେ କହି ସରକାରୀ ପକ୍ଷକୁ ବିଦ୍ରୁପରେ ଜର୍ଜରିତ କରିଦେଇଥିଲେ। ୧୯୩୨ ମାର୍ଚ୍ଚ ତିନି ତାରିଖ ଦିନ ରେଳବାଇ ବଜେଟ ଉପରେ ନିଜର ଭାଷଣ ରଖି ରେଳବାଇରେ ଓଡ଼ିଆମାନଙ୍କୁ ନିଯୁକ୍ତିରେ ଅଣଦେଖାର ପ୍ରସଙ୍ଗରେ ତୀବ୍ର କଟାକ୍ଷ କରିଥିଲେ। ୧୯୩୨ ମସିହା ନଭେମ୍ବର ୨୯ ଠାରୁ ଡିସେମ୍ବର ୧୫ ଭିତରେ ତାଙ୍କର ତିନିଗୋଟି ସିରିଜ୍‌ର ପ୍ରଶ୍ନମାଳାରେ ସେ ଓଡ଼ିଶା କମିଟିର ରିପୋର୍ଟ ବିଷୟରେ, ତୃତୀୟ ଗୋଲଟେବୁଲ ବୈଠକରେ ଉକ୍ତ କମିଟି ରିପୋର୍ଟର ଉପସ୍ଥାପନା ବିଷୟରେ ଓ ଉକ୍ତ ରିପୋର୍ଟ ଉପରେ ଭାରତ ସରକାରଙ୍କର ମନ୍ତବ୍ୟ ବିଷୟରେ ନାନା ତଥ୍ୟାନୁସନ୍ଧିତ୍ସୁ ସମସ୍ୟା ଉତ୍ଥାପନ କରିଥିଲେ।

୧୯୩୨ ମସିହା ଜୁଲାଇ ମାସରେ କାନାଡ଼ା ଉପନିବେଶର ଅଟାୱାଠାରେ ସାମାଜିକ ଅର୍ଥନୈତିକ ସମ୍ମିଳନୀ ବସିଥିଲା। କେନ୍ଦ୍ର ଆସେମ୍ବ୍ଲିର ବିନା ପରାମର୍ଶରେ ସରକାର ଭାରତର ପ୍ରତିନିଧିତ୍ୱ କରିବା ପାଇଁ ଏକ ପ୍ରତିନିଧି ଦଳ ନିଯୁକ୍ତ କରିଥିଲେ। ସମ୍ମିଳନୀର ପରିଣତି ସ୍ୱରୂପ ବିଲାତ ଓ ଭାରତ ଭିତରେ ଏକ ବାଣିଜ୍ୟ ରାଜିନାମା ସ୍ୱାକ୍ଷରିତ ହୋଇଥିଲା। ଏହି ରାଜିନାମା ବିରୁଦ୍ଧରେ ଭାରତରେ ବ୍ୟାପକ ବିରୋଧ ଦେଖାଦେଇଥିଲା। କାରଣ ଏହାଦ୍ୱାରା ଭାରତର କୌଣସି ଲାଭ ହେବାର ନଥିଲା, ବରଂ ଅର୍ଥନୈତିକ କ୍ଷତି ହେବାର ବାଟ ଖୋଲିଯାଇଥିଲା। ସେହିବର୍ଷ ନଭେମ୍ବର ୭ ତାରିଖରୁ ୨୮ ତାରିଖ ମଧ୍ୟରେ ଏହାକୁ ବିରୋଧ କରି ବାରିଷ୍ଟର ବିଶ୍ୱନାଥ ବ୍ୟବସ୍ଥାପକ ସଭାରେ ଗୁରୁତ୍ୱପୂର୍ଣ୍ଣ ଭାଷଣମାନ ଦେଇଥିଲେ ଏବଂ ଏହାକୁ ଏକ ସବ୍‌କମିଟିକୁ ସମୀକ୍ଷା ପାଇଁ ପଠାଇବାକୁ ସୁପାରିସ୍ କରିଥିଲେ। ତାଙ୍କର ବିରୋଧମାନଙ୍କ ମଧ୍ୟରେ ଗୋଟିଏ ଉଦ୍ଦେଶ୍ୟ ଥିଲା ଅତ୍ୟନ୍ତ ସ୍ପଷ୍ଟ, ଯାହା ଥିଲା ପ୍ରକୃତରେ 'ମିଷ୍ଟର ଓଡ଼ିଶା' ବିଶ୍ୱନାଥଙ୍କର। ସେ ଅତ୍ୟନ୍ତ ଭାବୁକ ହୋଇ କହିଥିଲେ ଅଟାୱା ଚୁକ୍ତିକୁ ଅନୁମୋଦନ କରିବା ଏତେ ଜରୁରୀ ପଡ଼ିଗଲା ଯେ ତାହାକୁ ଚଟାପଟ ସଭାଗୃହରେ ପେସ୍ କରିଦିଆଗଲା କିନ୍ତୁ ନୂଆ ଓଡ଼ିଶା ପ୍ରଦେଶର ଗଠନ, ଯାହାପାଇଁ

ଆମେ ଓଡ଼ିଶା ଲୋକେ ତିରିଶ, ଚାଳିଶ ବର୍ଷ ହେଲା ଆନ୍ଦୋଳନ କରିଆସୁଛୁ, ତାହାକୁ ବିଚାରକୁ ବି ନିଆଯାଉନାହିଁ ଏବଂ ସେ ବିଷୟରେ କିଛି ନିଷ୍ପତ୍ତି ହେଉ ନାହିଁ ।

ବିଶ୍ୱନାଥ ଓ ଅନ୍ୟାନ୍ୟ ବିରୋଧୀ ଦଳର ସଦସ୍ୟମାନଙ୍କର ଘୋର ବିରୋଧ ଫଳରେ ଅଟାଓ୍ୱା ଚୁକ୍ତିକୁ ଅନ୍ତରେ ଏକ ସିଲେକ୍ଟ କମିଟିକୁ ପଠାଯାଇ ଥିଲା । ୧୯୩୨ ମସିହା ବଜେଟ ଅଧିବେଶନର ଆଉ ଏକ ଘଟଣା ଥିଲା, ବିଶ୍ୱନାଥଙ୍କର ୧୯୩୧ ମସିହାରେ ଗଠିତ ଓଡନେଲ ସୀମା ନିର୍ଦ୍ଧାରଣ କମିଶନର ଓଡ଼ିଆ ବିରୋଧୀ ମତକୁ ବ୍ୟବସ୍ଥାପକ ସଭାରେ ପ୍ରବଳ ବିରୋଧ କରିବା । ଏ ସମ୍ବନ୍ଧରେ ସେ ଏତେ ବେଶୀ ଭାବାତ୍ମକ ହୋଇଯାଇଥିଲେ ଯେ ଗୃହର ସଭାପତିଙ୍କୁ ରୁଲିଂ ଜାରି କରିବାକୁ ପଡ଼ିଥିଲା ।

ବାରିଷ୍ଟର ବିଶ୍ୱନାଥ ତାଙ୍କର ବ୍ୟବସ୍ଥାପକ ଜୀବନ ଆରମ୍ଭ କରିଥିଲେ ୧୯୨୨ ମାର୍ଚ୍ଚ ୨୦ରେ, ଗୋରା ସରକାରଙ୍କ ଲବଣ ଟିକସ ଦୁଇଗୁଣ ବୃଦ୍ଧି ବିରୁଦ୍ଧରେ କହି । ତାଙ୍କର ଐତିହାସିକ ଭାଷଣ ବ୍ୟବସ୍ଥା ସଭାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଯାଇଛି । ଏହାର ପ୍ରଭାବ ଏତେ ସୁଦୂରପ୍ରସାରୀ ଥିଲା ଯେ ୧୯୩୨ରେ ବିଶ୍ୱନାଥଙ୍କ ଉଦ୍ୟମରେ ଓଡ଼ିଶାର ଲୁଣ ପୋକ୍ତାନ ବିଷୟରେ ଏକ ଅନୁସନ୍ଧାନ କମିଟି ଗଢ଼ିବାକୁ ଭାରତ ସରକାର ସ୍ଥିର କରିଥିଲେ । ସେହି କମିଟି ପରବର୍ତ୍ତୀ ବର୍ଷ ୧୯୩୩ ଅଗଷ୍ଟ ୨୨ ଦିନ ସଭାର ସଭାପତି ସମ୍ମୁଖମ୍ ଚେଟ୍ଟିଙ୍କ ଦ୍ୱାରା ସଭାଗୃହରେ ଘୋଷିତ ହୋଇଥିଲା । ଏହି କମିଟିର ସଭ୍ୟ ମଧ୍ୟ ଥିଲେ ବାରିଷ୍ଟର ବିଶ୍ୱନାଥ ମିଶ୍ର । ତାଙ୍କର ପ୍ରଚେଷ୍ଟାର ଉଦାହରଣ ଥିଲା ୧୯୩୨ ଡିସେମ୍ବରରେ ତାଙ୍କ ଦ୍ୱାରା ଦିଆଯାଇଥିବା ୧୬୧୭ ନମ୍ବର ତାରକା ଚିହ୍ନିତ ପ୍ରଶ୍ନ, ଯାହା ଥିଲା ଓଡ଼ିଶାର ଲବଣ ପୋକ୍ତାନ ସମ୍ବନ୍ଧରେ । ଏହା ଉତ୍ତରରେ ମାନ୍ୟବର ସାର୍ ଜର୍ଜ ସୁଷ୍ଟର (ଅର୍ଥବିଭାଗ ଶାସନ ଅଧିକାରୀ) ଏହି ତଥ୍ୟର ପୂର୍ଣ୍ଣାଙ୍ଗ ନିର୍ଘଣ୍ଟ ସଦନର ପଟଳରେ ଉପସ୍ଥାପନା କରିଥିଲେ ।

୧୯୩୩ ଶରତକାଳୀନ ଅଧିବେଶନ ଅଗଷ୍ଟ ୨୨ ତାରିଖ ଦିନ ବାରିଷ୍ଟର ବିଶ୍ୱନାଥ ମିଶ୍ର, ଠିକ୍ ମୁଲତବି ପ୍ରସ୍ତାବର ପୂର୍ବରୁ, ତାରକା ଚିହ୍ନିତ ପ୍ରଶ୍ନଗୁଡ଼ିକର ଉତ୍ତର ଚାହୁଁଥିଲେ । ଏଥିରେ ବଙ୍ଗଳାର ରେଗୁଲେସନ ବନ୍ଦୀ, ଅର୍ଡ଼ିନାନ୍ସ ବନ୍ଦୀ, ଅନ୍ୟାନ୍ୟ ରାଜନୈତିକ ବନ୍ଦୀ ଓ ସେମାନଙ୍କର ଜେଲ୍‌ଖାନାରେ ଥିବା ଅସୁବିଧା, ପରିବାର ଭତ୍ତା ସଂକ୍ରାନ୍ତରେ ଉତ୍ତର ଦେବାକୁ ସରକାରଙ୍କୁ ବାଧ୍ୟ କରିଥିଲେ ।

ଧୀରେ ଧୀରେ ଉପୁଜୁଥିବା ଓଡ଼ିଶାର ସୀମା ସମସ୍ୟା ଏବଂ ସେ ସମୟର ଓଡ଼ିଶାର ନେତାମାନଙ୍କ ମଧ୍ୟରେ ଏ ସଂପର୍କରେ ତୀବ୍ର ବିଭେଦ, ବିଶ୍ୱନାଥଙ୍କୁ ଅତ୍ୟନ୍ତ ବ୍ୟଥିତ କରିଥିଲା । 'ମିଷ୍ଟର ଓଡ଼ିଶା' ବିଶ୍ୱନାଥ ମିଶ୍ର ଯେ କି ଥିଲେ ଗଞ୍ଜାମର ଆଜୀବନ ନେତା, ଏ ପ୍ରକାର ବିଭେଦରେ କୌଣସି ପକ୍ଷକୁ ସମର୍ଥନ କରିପାରି ନଥିଲେ ଏବଂ ତାଙ୍କ ମାନସିକ ଉଦ୍‌ବେଗ ଅତି ମାତ୍ରାରେ ବଢ଼ିଯାଇଥିଲା । ଏହାର ପ୍ରତିଫଳନ ହୋଇଥିଲା ସିମଲାରେ ତାଙ୍କର ଶେଷ ବ୍ୟବସ୍ଥା ସଭା ଭାଷଣରେ ସେପ୍ଟେମ୍ବର ୧୩ ତାରିଖ ୧୯୩୩ ମସିହାରେ । ବିଷୟ ଥିଲା ଭାରତୀୟ ମିଲିଟାରୀ ଏକାଡେମୀ । ଗଭୀର ହୃଦ୍‌ଯନ୍ତ୍ରଣା ଅନୁଭବ କରୁଥିବା ସତ୍ତ୍ୱେ ସେ ତାଙ୍କ ଭାଷଣରେ ଗୋରା ସରକାରଙ୍କ ଅଭିସନ୍ଧିକୁ ନିଜ ଦୂରଦୃଷ୍ଟି ଦ୍ୱାରା ଠିକ୍ ଜାଣିପାରିଥିଲେ । ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ, ଭାରତ ସରକାର ଅର୍ଡ଼ିନାନ୍ସ ଜାରି କରି ଭାରତୀୟ ସାମରିକ ଅଫିସରମାନଙ୍କୁ ଗୋରା ଅଫିସରମାନଙ୍କଠାରୁ ଅଲଗା ଶ୍ରେଣୀଭୁକ୍ତ କରିଦେବେ । ଏହା ଫଳରେ ସେମାନେ ବ୍ରିଟିଶ ସୈନ୍ୟମାନଙ୍କୁ ଆଦେଶ ଦେବାର ଅଧିକାରରୁ ବଞ୍ଚିତ ହେବେ ଏବଂ ସେମାନେ ଯେତେ ବରିଷ୍ଠ ହେଲେ ମଧ୍ୟ ଗୋରା ଅଫିସରମାନଙ୍କଠାରୁ ଉପରକୁ ପଦୋନ୍ନତି ପାଇବେ ନାହିଁ । ଏପରି ଏକ ଅର୍ଡ଼ିନାନ୍ସ ଆସିବାର ଭବିଷ୍ୟତବାଣୀ ଭଳି ଆଶଙ୍କାକୁ ରୂପ ଦେବା ପାଇଁ ଆପଣାର ଉଦ୍‌ବେଗଜନକ ହୃଦ୍‌ପୀଡ଼ା ସତ୍ତ୍ୱେ ନିଜ ସ୍ଥାନରେ ଠିଆ ହୋଇ, ତାଙ୍କର ବେସରକାରୀ ପ୍ରସ୍ତାବ ଆଣିଥିଲେ । ତାଙ୍କର ଆଶଙ୍କା ପରବର୍ତ୍ତୀ ସମୟରେ ୧୯୩୪ ମସିହା ଜୁଲାଇ-ଅଗଷ୍ଟରେ ସତ୍ୟରେ ପ୍ରମାଣିତ ହୋଇଥିଲା । ଭାରତ ସରକାର ଏ ସମ୍ବନ୍ଧୀୟ ଏକ ବିଲ୍ ଆଣି, ବେସରକାରୀ ସଭ୍ୟଙ୍କ ବିରୋଧ ସତ୍ତ୍ୱେ ପାସ୍ କରାଇ ନେଇଥିଲେ । ଦୁଃଖର ବିଷୟ ଥିଲା, ବିଶ୍ୱନାଥ ତା'ର ଦଶମାସ ପୂର୍ବରୁ ହୃଦ୍‌ଘାତରେ ପ୍ରାଣ ତ୍ୟାଗ କରିସାରିଥିଲେ ।

ସେପ୍ଟେମ୍ବର ୧୩ ତାରିଖ ୧୯୩୩ର ସେଇ ଭାବ ବିହ୍ୱଳ ଭାଷଣ ପରେ ବାରିଷ୍ଟର ବିଶ୍ୱନାଥ ହୃଦ୍ ଯନ୍ତ୍ରଣାରେ

ଜର୍ଜରିତ ହୋଇ ସିମ୍‌ଲାରେ ଅବସ୍ଥାନ କରୁଥିବା 'ହିନ୍ଦୁ ହୋଟେଲ'ରେ ବିଶ୍ରାମ ନେଉଥିଲେ। ଅଧିବେଶନର ଶେଷ ଦିନ ଯାଏଁ ବ୍ୟବସ୍ଥା ସଭାରେ ଯୋଗ ମଧ୍ଯ ଦେଇଥିଲେ। କିନ୍ତୁ ଠିକ୍ ପରଦିନ ସେପ୍ଟେମ୍ବର ୧୯ ତାରିଖ ୧୯୩୩ ଦିନ ସେହିଠାରେ ହିଁ ତାଙ୍କର ପରଲୋକ ହୋଇଯାଇଥିଲା। ଅନେକ ବ୍ୟବସ୍ଥାପକଙ୍କ ଉପସ୍ଥିତିରେ ତାଙ୍କର ଶେଷକୃତ୍ୟ ସିମଲାର ସଂଜୋଲୀ ଶ୍ମଶାନରେ ସଂପନ୍ନ ହୋଇଥିଲା, ତାଙ୍କ ପ୍ରିୟ ଓଡ଼ିଶାଠାରୁ ଅନେକ ଦୂରରେ। ସାରା ଦେଶ ହୋଇଯାଇଥିଲା ସ୍ତବ୍ଧ ବାରିଷ୍ଟର ମିଶ୍ରଙ୍କ ଅକାଳ ବିୟୋଗରେ। 'ଆସୋସିଏଟେଡ୍ ପ୍ରେସ୍', 'ୟୁନାଇଟେଡ୍ ପ୍ରେସ୍', 'ଷ୍ଟେଟ୍ସମ୍ୟାନ୍', 'ଦୈନିକ ବିଶ୍ୱାମିତ୍ର'ଠାରୁ ଆରମ୍ଭ କରି 'ଦୈନିକ ଆଶା', 'ଉତ୍କଳ ଦୀପିକା', 'ନିଉ ଓରିଶା' ଆଦି ଦେଶର ଅନେକ ସମ୍ବାଦପତ୍ର ଉତ୍କଳ ରତ୍ନ ବିଶ୍ୱନାଥ ମିଶ୍ରଙ୍କ ବିୟୋଗରେ ଶୋକ ସମ୍ବାଦମାନ ପ୍ରକାଶ କରି ତାଙ୍କର ଗୁଣଗାନ କରିଥିଲେ।

ବିଶ୍ୱନାଥଙ୍କ ଦେହାନ୍ତର ପରଦିନ ବ୍ୟବସ୍ଥା ସଭାର ବିଶେଷ ଅଧିବେଶନରେ ଅନେକ ସଦସ୍ୟ ତାଙ୍କର ଗୁଣଗାନ କରି ତାଙ୍କର ଅମର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଦେଇଥିଲେ। ସେମାନଙ୍କ ମଧ୍ଯରୁ କିଛି ସଦସ୍ୟଙ୍କର ଭାଷଣ ନିମ୍ନରେ ଦିଆଗଲା।

**ଜଗନ୍ନାଥ ଅଗ୍ରୱାଲା :** ସଭାଗୃହରେ ଏହି ଅଂଶର ସଭ୍ୟମାନଙ୍କ ତରଫରୁ ମୁଁ ମୋର ଗଭୀର ଶୋକ ପ୍ରକାଶ କରୁଛି। ଅତୀବ ଶୋଚନୀୟ କଥା ଯେ ମିଷ୍ଟର ମିଶ୍ରଙ୍କୁ ବେସରକାରୀ ପ୍ରସ୍ତାବ ଦିନ ଏହି ସଭାରେ ଡେରାଡୁନ ସାମରିକ ଏକାଡେମୀ ଉପରେ ତାଙ୍କର ପ୍ରସ୍ତାବ ପେଶ୍ କରିବା ଏବେବି ସ୍ପଷ୍ଟ ସ୍ମରଣ କରୁଛି। ସେତେବେଳେ ସେ ପ୍ରଚଣ୍ଡ ରକ୍ତଚାପର ପୀଡ଼ାରେ ଅଥୟ ହେଉଥିଲେ। ବହୁ କଷ୍ଟରେ ଏବଂ କେବଳ କର୍ତ୍ତବ୍ୟର ଅନୁରୋଧରେ ସେ ଆପଣାର କରଣୀୟ ନିର୍ଦ୍ଧାରିତ ଉଦ୍ଦେଶ୍ୟରୁ ବିରତ ହୋଇନଥିଲେ। ସ୍ୱାସ୍ଥ୍ୟରେ ଗୁରୁତର ହାନି ସତ୍ତ୍ୱେ , ସେ କର୍ତ୍ତବ୍ୟରେ ଅଟଳ ରହିଥିଲେ। ଆପଣାର ଆରାମ ଓ ସୁବିଧା ଅପେକ୍ଷା ସେ ସବୁବେଳେ ଆପଣାର କର୍ତ୍ତବ୍ୟକୁ ଉଚ୍ଚସ୍ଥାନ ଦେଉଥିଲେ। ଗୃହର ମାନ୍ୟବର ଦଳପତି ଯଥାର୍ଥରେ କହିଛନ୍ତି ଯେ, ସେ ତାଙ୍କର ଅଧ୍ୟବସାୟର ଫଳଶ୍ରୁତି ପ୍ରତିଷ୍ଠା ଦେଖିବାକୁ ଜୀବନରେ ରହିଲେ ନାହିଁ। ଆମେ ସମସ୍ତେ ଜାଣୁ, ସେ ଥିଲେ ଜଣେ ଦୟାର୍ଦ୍ର ଓ ଅହଂକାରଶୂନ୍ୟ ମୂର୍ତ୍ତି, ଯିଏ ଜୀବନରେ ବହୁ ମିତ୍ର ସୃଷ୍ଟି କରିଥିଲେ, ବୋଧହୁଏ ଗୋଟିଏ ବି ଶତ୍ରୁ ସୃଷ୍ଟି କରିନାହାନ୍ତି। ଏ ଘରେ କିମ୍ବା ବାହାରେ ଏପରି କେହି ନାହିଁ ଯିଏ କି କହିବ ଯେ ମିଷ୍ଟର ମିଶ୍ର କାହାର ବିରୋଧରେ କୌଣସି କୁଭାଷା ପ୍ରୟୋଗ କରିଛନ୍ତି ବା କାହାର କୌଣସି ପ୍ରକାର ହାନି ଘଟାଇଛନ୍ତି।....

**ଏନ୍.ଏନ୍. ଅଙ୍କଲେସରିଆ :** ସଭାପତି ମହାଶୟ, ଅତୀବ ବିଦାରକ କଥା ଏହି ଯେ ଅଧିବେଶନର ତରଙ୍ଗ ବିହୀନ ବାତାବରଣ ଅନ୍ତିମ ବେଳାରେ ଏକ ଶୋଚନୀୟ ବିଦାୟ ଏହାର ସମସ୍ତ ଶାନ୍ତ ପରିବେଶରେ କାଳିମା ଘନର ପ୍ରଲେପ ବୋଳି ଦେଲା। ମିଷ୍ଟର ମିଶ୍ରଙ୍କର ମୃତ୍ୟୁ ଏକ ଯନ୍ତ୍ରଣାଦାୟକ ଅବସ୍ଥାରେ ତାଙ୍କର ଗୃହ ଓ ପରିବାରଠାରୁ ବହୁ ଦୂରରେ ଘଟିଥିଲା। ମିଷ୍ଟର ମିଶ୍ର ମସ୍ତିଷ୍କ ଓ ହୃଦୟର ମହାନ ଗୁଣାବଳିରେ ଭରପୂର ଥିଲେ। ସେ ଥିଲେ ଜଣେ ସର୍ବତୋଭାବରେ ମଣିଷ। ବାଳୁତ ସୁଲଭ ସରଳ ହୃଦୟ। ହିନ୍ଦୁ ଧର୍ମ ଓ ହିନ୍ଦୁ ଦର୍ଶନ ଉପରେ ତାଙ୍କର ଥିଲା ଅସାଧାରଣ ବ୍ୟୁତ୍ପତ୍ତି। ଅନେକେ ଜାଣି ନଥିବେ ଯେ ମୃତ୍ୟୁ ସମୟରେ ପୃଥିବୀର ବିଭିନ୍ନ ଧର୍ମ ଉପରେ ଏକ ତୁଳନାତ୍ମକ ଇତିହାସ ଲେଖାରେ ସେ ବ୍ୟାପୃତ ଥିଲେ। ପ୍ରଥମ କେନ୍ଦ୍ର ବ୍ୟବସ୍ଥାପକ ସଭାର ସେ ଜଣେ ନିର୍ବାଚିତ ସଦସ୍ୟ ଥିଲେ ଓ କେବଳ ମାତ୍ର ଗୋଟିଏ ଭୋଟରେ ଜଣେ ସ୍ୱରାଜ୍ୟ ପ୍ରତିଦ୍ୱନ୍ଦ୍ୱୀଙ୍କ ନିକଟରେ ଦ୍ୱିତୀୟ କେନ୍ଦ୍ର ବ୍ୟବସ୍ଥାପକ ସଭା ଭୋଟରେ ହାରି ଯାଇଥିଲେ। ......

**ସି.ଏସ୍. ରଙ୍ଗାଆୟାର :** ସେ କେବଳ 'ବିଭିନ୍ନ ଧର୍ମର ତୁଳନାତ୍ମକ ବିଚାର ପୁସ୍ତକ ଲେଖୁ ନଥିଲେ, ଷ୍ଟେଟ୍ସ୍‌ମ୍ୟାନ୍‌ର ଶୋକ ସମ୍ବାଦରୁ ଜଣାପଡ଼େ ଯେ, ସେ ବହୁକାଳ ବ୍ୟାପୀ ସାଧନା କରି 'A Short History of Ancient Utkal' ଲେଖିଥିଲେ। ଏଥିପାଇଁ ସେ ବ୍ରିଟିଶ ମ୍ୟୁଜିୟମରେ ଓଡ଼ିଆ ଜନଗଣଙ୍କ ଇତିହାସ, ସେମାନଙ୍କର ଅଧୁନାତନ ଅଞ୍ଚଳ ଇତ୍ୟାଦି ବିଷୟ ଅଧ୍ୟୟନରେ ବହୁ ସମୟ ନିୟୋଜିତ କରିଥିଲେ। ସେ ଗଭୀର ଶୋକପୂର୍ଣ୍ଣ ବାଷ୍ପାକୁଳ କଣ୍ଠରେ କହିଥିଲେ, ମହାଶୟ, ଏକ ସପ୍ତାହ ତଳେ ମିଷ୍ଟର ମିଶ୍ର ମୋର ସେସିଲ ହୋଟେଲରେ

ଥିବା ପ୍ରକୋଷ୍ଠକୁ ତାଙ୍କର ନୂତନ ପୁସ୍ତକର ପାଣ୍ଡୁଲିପି ଘେନି ଆସିଥିଲେ। ସେ ମୋତେ ତାହାକୁ ପରୀକ୍ଷା କରି ପ୍ରକାଶଯୋଗ୍ୟ କରିଦେବା ଲାଗି ଅନୁରୋଧ କରିବାକୁ ଆସିଥିଲେ। ମୁଁ ସେତେବେଳେ ତିଳେମାତ୍ର ଧାରଣା କରି ନଥିଲି ଯେ ତାହାର ଏକ ସପ୍ତାହ ପରେ ମୋତେ ଏଇ ସଭାର ଚଟାଣ ଉପରେ ଏପରି ଜଣେ ସତ୍ୟ ସାଧକ, ଉତ୍ତମ ଲୋକର ମହାପ୍ରୟାଣ ବିଷୟରେ ମୋର ମନୋଭାବ ପ୍ରକାଶ କରିବାକୁ ପଡ଼ିବ, କିମ୍ବା ମୋତେ ଗତକାଲି ଯାହା ମୁଁ କଲି ତାହା, ଅର୍ଥାତ୍ ମୂଷଳଧାରା ବର୍ଷା ତଳେ ତାଙ୍କରି ଚିତାଗ୍ନି ସମ୍ମୁଖରେ ଛିଡ଼ା ହେବାକୁ ପଡ଼ିବ। ସେ ଏପରି ଜଣେ ବରେଣ୍ୟ ବ୍ୟକ୍ତି, ଯିଏ ଯାହାରବି ସଂପର୍କରେ ଆସିଛନ୍ତି, ତାହାକୁ ମୁଗ୍ଧ କରିଛନ୍ତି। ତାଙ୍କର ସୌଜନ୍ୟ ଓ ସର୍ବୋପରି ତାଙ୍କର ହାସ୍ୟ ରସିକତାର ଅସରନ୍ତି ଭଣ୍ଡାର ତାଙ୍କୁ ରାଜନୀତିର କଠୋର କର୍କଶ କ୍ଷେତ୍ରରେ ଏକ ଶ୍ରେଷ୍ଠତମ ବନ୍ଧୁଭାବେ ପ୍ରତିଭାତ କରିଥିଲା।

**ନବାବ ମେଜର ମାଲିକ :** ମହାଶୟ, ମୁଁ ମୋର ପାର୍ଟି ତରଫରୁ ଓ ମୋ ନିଜ ତରଫରୁ ପୂର୍ବବର୍ତ୍ତୀ ବକ୍ତାମାନଙ୍କର ବକ୍ତବ୍ୟ ସହିତ ଆପଣାକୁ ସାମିଲ କରୁଛି। ମୋର ସେଦିନ କାଲିପରି ମନେ ଅଛି, ଯେଉଁଦିନ ମୁଁ ପ୍ରଥମେ ଏହି ସଭାଗୃହରେ ପ୍ରବେଶ କଲି। ମିଷ୍ଟର ମିଶ୍ର ତାଙ୍କର ଓଡ଼ିଶାର ପୃଥକ୍ ପ୍ରଦେଶ ଗଠନ ଯୋଜନାରେ ତାଙ୍କୁ ସାହାଯ୍ୟ କରିବାକୁ ମୋତେ ଅନୁରୋଧ କରିଥିଲେ ଓ ମୁଁ ତାଙ୍କୁ ସ୍ୱୀକୃତି ଦେଇଥିଲି। ତା'ପରେ ମହାଶୟ, ଏବେ ସେଦିନ ଭାରତୀୟ ସୈନ୍ୟବାହିନୀର ଭାରତୀୟକରଣ ବିଷୟରେ ତାଙ୍କର ବକ୍ତୃତା ଶେଷରେ ଗୃହରୁ ବାହାରି ଆସିଲାବେଳେ ମୋତେ କହିଥିଲେ ଯେ ତାଙ୍କର ସେ ଦିନର ଗୁରୁତର ପୀଡ଼ା ଯୋଗୁଁ ସେ ତାଙ୍କର ବକ୍ତୃତାକୁ ଆଶାନୁରୂପ କରିପାରିନଥିଲେ। ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ସେ ତାଙ୍କର ପ୍ରିୟତମ ଯୋଜନା ଫଳବତୀ ହେବାର ସ୍ୱଚକ୍ଷୁରେ ଦେଖିପାରିଲେ ନାହିଁ ଓ ନୂତନ ବ୍ୟବସ୍ଥାରେ ଆପଣାର ଭାଗ ନେବାରୁ ବଞ୍ଚିତ ହୋଇଗଲେ।

**ସାର୍ ଲେସଲି ହଡ଼ସନ :** ମିଷ୍ଟର ମିଶ୍ରଙ୍କର ଜୀବନବ୍ୟାପୀ ସାଧନା 'ଉତ୍କଳ ଦେଶ ମିଶ୍ରଣର' ଫଳ ଫଳିଲା ବେଳକୁ କାଳ ତାଙ୍କୁ ସମୟ ଦେଲାନାହିଁ। ତାଙ୍କର ଅମାୟିକ ଉଦାର ହାବଭାବରେ ସେ ସାରାଗୃହରେ ସଦସ୍ୟମାନଙ୍କର ମନକୁ ଜୟ କରିଥିଲେ। ତାଙ୍କୁ ଆମେ ସମସ୍ତେ ହରାଇ ସବୁବେଳେ ଖୋଜିବୁ।

**ସାର୍ କୱାସଜି ଜାହାଙ୍ଗୀର :** ସଭାପତି ମହୋଦୟ, ମିଷ୍ଟର ମିଶ୍ର ଏହି ସଭାଗୃହର ଏପରି ଏକ ସଦସ୍ୟ ଥିଲେ ଯିଏ ଆପଣାର ନୀରବ, ଆଡ଼ମ୍ବରହୀନ ସ୍ୱଭାବରେ ସମସ୍ତଙ୍କୁ କିଣି ନେଇଥିଲେ। ଆମ ଭିତରେ ତାଙ୍କର ଜଣେ କେହି ବିରୋଧୀ ନଥିଲେ। ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଥିଲା ତାଙ୍କ ଜୀବନର ଶ୍ରେଷ୍ଠତମ ବ୍ରତ ଯାହା ସମ୍ପୂର୍ଣ୍ଣ ହୋଇଛି। କିନ୍ତୁ ସେ ତାଙ୍କ ପ୍ରଦେଶରେ ଜଣେ ଗଭର୍ଣ୍ଣର ଇନ୍ କାଉନସିଲଙ୍କର ଅଧିଷ୍ଠାନ ଦେଖିପାରିଲେ ନାହିଁ, ଏତିକି ଅବଶୋଷ ରହିଗଲା। ମୁଁ ଜାଣିଛି ମିଷ୍ଟର ମିଶ୍ର ତାଙ୍କର ଗୋଟିଏ ଇତିହାସ ଲେଖୁଥିଲେ ଯାହାକୁ ଭବିଷ୍ୟତରେ ଆମ୍ଭେମାନେ ଅଧ୍ୟୟନ କରିଥାନ୍ତୁ। ମିଷ୍ଟର ମିଶ୍ର ତାଙ୍କର ପ୍ରଦେଶଗତ ପ୍ରାଣ ଥିଲେ ଓ ତାଙ୍କର ନିର୍ବାଚନ ମଣ୍ଡଳୀର ସୁଖ ଦୁଃଖ ଅତି ବିଶ୍ୱସ୍ତଭାବରେ ଏଠାରେ ଉପସ୍ଥାପିତ କରୁଥିଲେ। କୌଣସି ଗୋଟିଏ ଘଟଣାର ବକ୍ତୃତାରେ ସେ କେବେ ଓଡ଼ିଶାକୁ ଓ ଓଡ଼ିଶାର ସମସ୍ୟାକୁ ଭୁଲିଥିବାର ମୁଁ ଜାଣେ ନାହିଁ। ମୁଁ ଆପଣଙ୍କୁ ଅନୁଯୋଗ କରୁଛି ଯେ ଆପଣ ତାଙ୍କର ଶୋକାଭିଭୂତ ପରିବାରବର୍ଗଙ୍କୁ ଆମର ଗଭୀର ସମବେଦନା ଜଣାଇ ଦେବେ।

**ମିଷ୍ଟର ଭୂପତ ସିଂହ :** ମୁଁ ଗଭୀର ଭାବରେ ମର୍ମାହତ ଯେ ଓଡ଼ିଶାର ପ୍ରାଚୀନ ଇତିହାସ ଓ ପ୍ରାଚୀନ ସଂସ୍କୃତି ଉପରେ ତାଙ୍କର ସ୍ୱରଚିତ ପୁସ୍ତକ ଯାହା ସେ ପ୍ରାୟ ପ୍ରଣୟନ କରି ସାରିଥିଲେ, ତାହାର ପ୍ରକାଶ ଦେଖିପାରିଲେ ନାହିଁ। ଏହା ଥିଲା ତାଙ୍କ ଜୀବନର ତୁଙ୍ଗ ଅଭିଳାଷ। ସେ ଓଡ଼ିଆ ଭାଷାରେ ଜଣେ ଧୂରିଣ ପଣ୍ଡିତ ଥିଲେ। ଓଡ଼ିଶାର ଜନସାଧାରଣ ତାଙ୍କ ନିକଟରେ ସ୍ୱତନ୍ତ୍ର ପ୍ରଦେଶ ଗଠନରେ ତାଙ୍କର ଅଦମ୍ୟ ନିଷ୍ଠା ଓ ପ୍ରଣିପାତ ଅଧ୍ୟବସାୟ ପାଇଁ ଚିରଦିନ ଋଣୀ ରହିବେ।

**ମିଷ୍ଟର ଗୟାପ୍ରସାଦ ସିଂହ :** ମହାଶୟ, ମୋର ସ୍ପଷ୍ଟ ସ୍ମରଣ ଅଛି ଯେତେବେଳେ ମିଷ୍ଟର ମିଶ୍ର ରକ୍ତଚାପର ବେଦନାରେ ଅତିଷ୍ଠ ହେଉଥାନ୍ତି, ମୁଁ ତାଙ୍କୁ ବାରମ୍ବାର ଅନୁରୋଧ କରିଥିଲି ସିମଲା ଛାଡ଼ି ଦକ୍ଷିଣର ସମଶୀତଳ ଅଞ୍ଚଳକୁ

ବାହାରିଯିବାକୁ । ଏପରିକି ମୁଁ ମୋର ଡାକ୍ତର ବନ୍ଧୁ ଜଲାଲଙ୍କୁ ମଧ୍ୟ ଅନୁରୋଧ କରିଥିଲି ଯେ ସେ ମିଷ୍ଟର ମିଶ୍ରଙ୍କୁ କୁହନ୍ତୁ, ଯେପରି ସେ ସିମଲା ଛାଡ଼ି ବାହାରିଯିବେ । କିନ୍ତୁ କର୍ତ୍ତବ୍ୟ ପ୍ରତି ଏକାନ୍ତ ନିଷ୍ଠା ତାଙ୍କର ଏତେ ପ୍ରବଳ ଥିଲା ଯେ, କହିବାକୁ ଗଲେ ସେ ଆପଣାର କର୍ମସ୍ଥଳରେ ହିଁ ଟଳି ପଡ଼ିଲେ । ପ୍ରତ୍ୟେକ ବୈଠକରେ ଯୋଗ ଦେବାରେ ସେ ଥିଲେ ଅତ୍ୟନ୍ତ କର୍ତ୍ତବ୍ୟ ବ୍ରତୀ । ଏହି ଶିକ୍ଷା ତାଙ୍କଠାରୁ ଆମ ଭିତରେ ଅନେକେ ଗ୍ରହଣ କରିବା ଉଚିତ ।

**ସାର୍ ଜୋସେଫ୍ ଭୋର୍ (ଗୃହର ନେତା) :** ମିଷ୍ଟର ମିଶ୍ର, ମୋର ଧାରଣା ପ୍ରଥମ ଓ ତୃତୀୟ ବ୍ୟବସ୍ଥାପକ ସଭାର ମଧ୍ୟ ସଦସ୍ୟ ଥିଲେ । ଓଡ଼ିଶାର ଦାବୀ ବିଷୟରେ ତାଙ୍କର ଐକାନ୍ତିକ ବାଗ୍ମିତା କଥା ମୁଁ ବ୍ୟକ୍ତିଗତ ଭାବରେ କଦାପି ବିସ୍ମିତ ହେବି ନାହିଁ । ଦୁଃଖର କଥା, ତାଙ୍କର ଅଭିଳାଷ ସମ୍ପୂର୍ଣ୍ଣ ହେବା ମୁହୂର୍ତ୍ତରେ ସେ ଆମ୍ଭମାନଙ୍କଠାରୁ ବିଦାୟ ନେଇଗଲେ । ତାଙ୍କ ବିଷୟରେ ଆଉ ବେଶୀ କିଛି କହିବା ଅନାବଶ୍ୟକ କାରଣ ସେ କାଲିଯାଏଁ ଆମ ମଧ୍ୟରେ ଥିଲେ । ମୋର କେବଳ ଏତିକି କହିବାର କଥା, ତାଙ୍କର ଧୀର ଓ ଅନାଡ଼ମ୍ବର ଉପସ୍ଥିତି ସମସ୍ତଙ୍କର ପ୍ରୀତି ଓ ଶ୍ରଦ୍ଧାର ଅଧିକାରୀ ହୋଇଥିଲା । ମୁଁ ଆପଣଙ୍କୁ ଅନୁରୋଧ କରିବି ଯେ ତାଙ୍କର ପରିବାର ସ୍ୱଜନଙ୍କୁ ଆପଣ ମୋର ଗଭୀର ଶୋକାନୁଭୂତି ଓ ସମବେଦନା ଜଣାଇଦେବେ ।

ସଦସ୍ୟମାନଙ୍କ ଶ୍ରଦ୍ଧାଞ୍ଜଳିର ଶେଷରେ ସଭାପତି ମାନ୍ୟବର ସାର୍ ସମ୍ମୁଖମ ଚେଟ୍ଟି କହିଥିଲେ : ଆମରି ବିଗତ ସହକର୍ମୀ ମିଷ୍ଟର ବି.ଏନ୍. ମିଶ୍ରଙ୍କର ସ୍ମୃତି ପ୍ରତି ଯେଉଁ ଶ୍ରଦ୍ଧାଞ୍ଜଳି ଏଠାରେ ଅର୍ପିତ ହେଲା ସେଥିରେ ମୁଁ ଏହି ଆସନାଧିଷ୍ଠଙ୍କର ଗଭୀର ସମ୍ମତି ଜଣାଇବାକୁ ଚାହେଁ । ମିଷ୍ଟର ମିଶ୍ର ଏହି ସଭାଗୃହର ସବୁ ଅଂଶର ସଦସ୍ୟଙ୍କର ସ୍ନେହଭାଜନ ହୋଇପାରିଥିଲେ । ଏହି ସଭାରେ ତାଙ୍କର ନିୟମିତ ଉପସ୍ଥିତି ତାଙ୍କର କର୍ତ୍ତବ୍ୟନିଷ୍ଠାର ଯଥେଷ୍ଟ ପ୍ରମାଣ ଦେଇଛି । ତାଙ୍କର ଏହି କର୍ତ୍ତବ୍ୟନିଷ୍ଠା ଆମ ସମସ୍ତଙ୍କ ପାଇଁ ଏକ ଆଦର୍ଶ ହେଉ । ବିଷାଦମୟ ଅବସରରେ ତାଙ୍କର ଶୋକାପ୍ଲୁତ ପରିବାରର ବ୍ୟକ୍ତିମାନଙ୍କୁ ଆମର ଗଭୀର ବିଚ୍ଛେଦର ବେଦନା ଓ ସହାନୁଭୂତି ଜ୍ଞାପନ କରିବା ମୋର ଅବଶ୍ୟ କର୍ତ୍ତବ୍ୟ ହେବ ।

ଭାରତର କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାର ଏହି ବିଶେଷ ଅଧିବେଶନ ଉତ୍କଳ ରତ୍ନ ବାରିଷ୍ଟର ବିଶ୍ୱନାଥଙ୍କ ବିୟୋଗରେ ଭାବ ବିହ୍ୱଳ ହୋଇପଡ଼ିଥିଲା । ସମଗ୍ର ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳରେ ମଧ୍ୟ ଶୋକର ଛାୟା ଖେଳିଯାଇଥିଲା ତାଙ୍କ ବିୟୋଗରେ । ଭାରତର ବିଭିନ୍ନ ଜାଗାରେ ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ବାରିଷ୍ଟର ବିଶ୍ୱନାଥଙ୍କ ପାଇଁ ଶୋକସଭାମାନ ଆୟୋଜନ ହୋଇଥିଲା ।

ବନ୍ଦେ ଉତ୍କଳ ଜନନୀ ।

**ତଥ୍ୟ :**


୧. 'ଜାତି ପ୍ରାଣ ସିନ୍ଧୁର ଆଦ୍ୟ ତରଙ୍ଗ', ମନମୋହନ ମିଶ୍ର
୨. 'ଉତ୍କଳ ସମ୍ମିଳନୀ' ପ୍ରସ୍ତାବ ସଂଗ୍ରହ, ଦେବେନ୍ଦ୍ର କୁମାର ଦାଶ
୩. ବିଚ୍ଛିନ୍ନାଞ୍ଚଳର ଦରଦୀ ବନ୍ଧୁ - ଉତ୍କଳରତ୍ନ ବାରିଷ୍ଟର ବିଶ୍ୱନାଥ ମିଶ୍ର, ସୂର୍ଯ୍ୟ କୁମାର ମିଶ୍ର
୪. 'ଦୈନିକ ଆଶା'
୫. 'Orissa Review', August 2008, Sridhar Charan Sahoo
୬. www.middletemple.org.uk



୪୧୬(ବି) ପଦ୍ମାବତୀ ବିହାର
ଭୁବନେଶ୍ୱର - ୭୫୧୦୨୧




# ଓଡ଼ିଶା ମଣ୍ଡଳେ ମହାରାଜା ଶ୍ରୀରାମଚନ୍ଦ୍ର

ନିର୍ମଳା କୁମାରୀ ମହାପାତ୍ର

''କୋଟି ତାରା ମଧ୍ୟେ ଯେହ୍ନେ ଶୋଭାପାଏ ଚନ୍ଦ୍ର
ଓଡ଼ିଶା ମଣ୍ଡଳେ ମହାରାଜ ରାମଚନ୍ଦ୍ର ।
ଧନେ ମାନେ ଜାତିକୁଳେ ରୂପେ କ୍ଷମତାରେ,
ଏତେ ଗୁଣ ପୂର୍ଣ୍ଣ କାହିଁ ଅଛି ଏକାଧାରେ ?
ନବୀନ ବୟସ ଏଣେ ଅତୁଳ ସଂପତ୍ତି,
ନାଟ ଖେଳ ଘେନି କାଟୁଥାନ୍ତି ଦିନରାତି ।
ସେ ସକଳ କଥା କିଛି ନ ପକାଇ ମନେ
ଦିନରାତି ଲାଗିଅଛ ଶାସ୍ତ୍ର ଅଧ୍ୟୟନେ ।

x x x

ଆଶା ଅଛି ଓଡ଼ିଆକୁ ଅନାଇବ ବାରେ,
ଅବଶ୍ୟ କୀରତି ବାନା ଉଡ଼ିବ ସଂସାରେ ।
ରହୁ ତୁମ୍ଭ ଚିତ୍ତ ଭଗବାନଙ୍କ ଚରଣେ,
ପୁତ୍ର ନିର୍ବିଶେଷେ ପ୍ରତିପାଳ ପ୍ରଜାଗଣେ ।''
ଫକୀରମୋହନ ଗ୍ରନ୍ଥାବଳୀ / ପ୍ରଥମଭାଗ - ପୃ.୨୦୨

ବ୍ୟାସକବି ଫକୀର ମୋହନ ସେନାପତି ଯେଉଁ ଅଧ୍ୟୟନଶୀଳ ତରୁଣଙ୍କ ପ୍ରତି ଆଶିଷ ଢାଳି ଥିଲେ ଅବଶ୍ୟ ତାଙ୍କ ଜୀବନରେ ସେ କୀରତିବାନା ଉଡ଼ାଇ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ (୧୯୦୩) ରେ ସଭାପତି ଆସନ ମଣ୍ଡନ କରିଥିଲେ । ସେ ହେଲେ ମୟୂରଭଞ୍ଜର ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ । କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଓ ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନ ତାଙ୍କରି ସ୍ମୃତିରେ ନିର୍ମିତ ହୋଇଅଛି । ଓଡ଼ିଶାର ବରପୁତ୍ର ନବ ଉତ୍କଳର ନିର୍ମାତା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଜନ୍ମ ୧୮୭୧, ଡିସେମ୍ବର ୧୭ ତାରିଖରେ । ପିତା ଶ୍ରୀ କୃଷ୍ଣଚନ୍ଦ୍ର ଭଞ୍ଜ ପୁତ୍ରର ବାଲ୍ୟଶିକ୍ଷା ପାଇଁ ପ୍ରଯତ୍ନଶୀଳ ଥିଲେ । ପ୍ରକାଶ ଥାଉ କି, ଏ ହେଉଛନ୍ତି ସେହି ଧାର୍ମିକ-ଉଦାର ଶିକ୍ଷାପ୍ରେମୀ ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଭଞ୍ଜ, ଯାହାଙ୍କଠାରୁ ଟ୨୭,୦୦୦/- (ସତେଇଶ ହଜାର ଟଙ୍କା)ର ଦାନ ରେଭେନ୍ସା ସାହେବଙ୍କୁ କଲେଜ ସ୍ଥାପନ ପାଇଁ ଦିଆଯାଇଥିଲା । ତତ୍‌କାଳୀନ କମିଶନ ରେଭେନ୍ସା ସାହେବ ରାଜାଙ୍କର ଏତାଦୃଶ ଦାନଶୀଳତା ଓ ମହାନତା ଉପଲବ୍ଧି କରି ତାଙ୍କୁ ମହାରାଜା ଉପାଧି ଦେଇଥିଲେ । ବସନ୍ତ ରୋଗରେ ପୀଡ଼ିତ ବାଳକ ଶ୍ରୀରାମଚନ୍ଦ୍ର ମାତ୍ର ନଅବର୍ଷ ବୟସରେ ପିତାଙ୍କୁ ହରାଇଥିଲେ । ରାଜ୍ୟର ଶାସନଭାର ନେଇଥିଲେ ୱିଲି ସାହେବ । ସେତେବେଳେ (ଖ୍ରୀ.ଅ ୧୮୮୦)କୁ ବଙ୍ଗ-ବିହାର-ଓଡ଼ିଶା ଥିଲା ଏକ ଶାସନରେ । ମୟୂରଭଞ୍ଜ ଭବନରେ ଗୁରୁ ତଥା ଲେଖକ ଶ୍ରୀ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବାଲ୍ୟଶିକ୍ଷା ଓ ପରେ କଟକରେ ସାହେବ ବ୍ରେଟାମ କିଡ଼େଲଙ୍କ ପ୍ରଯତ୍ନରେ ପାଖାପାଖି ୧୨ବର୍ଷ ଅଧ୍ୟୟନ କରି ୧୮୮୮ରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ତରୁଣ ଶ୍ରୀରାମଚନ୍ଦ୍ର । ତତ୍‌ପରେ ରେଭେନ୍ସା କଲେଜରୁ ଏଫ୍. ଏ (ଆଇ. ଏ ସହ ତୁଳିତ) ପାଶ୍ କରି ବି.ଏ. ପଢୁଥିବା ବେଳେ ତାଙ୍କର ରାଜ୍ୟାଭିଷେକ ହୋଇଥିଲା । ଏଣୁ ବି.ଏ. ପରୀକ୍ଷା ସେ ଦେଇପାରି ନଥିଲେ । ରାଜ ସିଂହାସନରେ ବସିବାର ଚାରିବର୍ଷ ପରେ ତାଙ୍କର ବିବାହ ହୋଇଥିଲା ଲକ୍ଷ୍ମୀ କୁମାରୀଙ୍କ ସହ । ରାଜଧର୍ମ ଦର୍ଶନର ଗଭୀର ଅଧ୍ୟୟନ-ଅନୁଧ୍ୟାନପୂର୍ବକ ସେ ଗଣତାନ୍ତ୍ରିକ ରୀତିରେ ଷ୍ଟେଟ୍ କାଉନ୍‌ସିଲ ଗଠନ କରି ସେଥିରେ ସରକାରୀ ଓ ବେସରକାରୀ ସଦସ୍ୟମାନଙ୍କୁ ନେଇଥିଲେ । ପଣ୍ଡିତ ଗୋପବଂଧୁ ଦାସ ଉଭୟଙ୍କ ସଦସ୍ୟ ଥିଲେ । କାଉନସିଲ ମାଧ୍ୟମରେ ଶାସନଗତ ଆଇନର ସଂଶୋଧନ ତାଙ୍କ ସମୟରେ କରାଯାଉଥିଲା । ମୟୂରଭଞ୍ଜକୁ ଏକ ଆଦର୍ଶ ରାଜ୍ୟ ଭାବେ ଗଢ଼ି ତୋଳିବାରେ ସେ ବହୁ ଚେଷ୍ଟା କରିଥିଲେ । ଶିକ୍ଷା-ସ୍ୱାସ୍ଥ୍ୟ-

ପୋଲିସ ବିଭାଗର ସଂସ୍କାର ସେ କରାଇଥିଲେ । ତାଙ୍କ ଅମଳରେ ପ୍ରାଥମିକ ବିଦ୍ୟାଳୟର ସଂଖ୍ୟା ୪୪ ରୁ ୪୦୦କୁ ବୃଦ୍ଧି ହୋଇଥିଲା । ତାଙ୍କ ପୃଷ୍ଠପୋଷକତାରେ 'ଉତ୍କଳପ୍ରଭା' ପତ୍ରିକା ପ୍ରକାଶିତ ହୋଇଥିଲା । ରାଜ୍ୟାଭିଷେକ ପରେ ପରେ ସେ ୫୦୦ ମାଇଲ ସଡ଼କପଥ ନିର୍ମାଣ କରାଇଥିଲେ । ବାରିପଦାକୁ ବିଭିନ୍ନ ନଗର ସହ ତାର ଯୋଗାଯୋଗ, ବାରିପଦାରୁ ରୁପ୍‌ସା ଯାଏ ନ୍ୟାରୋ-ଗଜ୍ କରାଇବା ତାଙ୍କ ଦୂରଦୃଷ୍ଟିର ଅନ୍ୟତମ ଦୃଷ୍ଟାନ୍ତ । ରେଳପଥ ବିସ୍ତାର (narrow gauge Railway) ତାଙ୍କର ଅନ୍ୟତମ କୀର୍ତ୍ତି । ଏହି ନିର୍ମାଣ କାର୍ଯ୍ୟର ଶୁଭ ଦେଇଥିଲେ ତତ୍କାଳୀନ ଛୋଟଲାଟ୍ ସାର୍ ଆଣ୍ଡ୍ରୁ ଫେଜର । ଏବେ ଅବଶ୍ୟ ସେ ରେଳପଥ ବଦଳି ବ୍ରଡ଼ଗଜ ହୋଇଗଲାଣି । ଜନସାଧାରଣଙ୍କର ଜଳକଷ୍ଟ ନିବାରଣ ପାଇଁ ସେ 'ହଳଡ଼ିହ' ଓ 'ହଳଦିଆ' ଠାରେ ଦୁଇଗୋଟି ବୃହତ୍ ଜଳଭଣ୍ଡାର କରାଇଥିଲେ । ତାଙ୍କର ସମସ୍ତ ନିର୍ମାଣକାର୍ଯ୍ୟ ମୁଖ୍ୟ ଇଂଜିନିୟର ମାର୍ଟିନ୍ ଆର୍ନୋଲ୍‌ଡ଼ଙ୍କ ତତ୍ତ୍ୱାବଧାନରେ କରାଯାଉଥିଲା । ତାଙ୍କର ରାଜଧାନୀ ବାରିପଦାରେ ଉନ୍ନତ ପାଠାଗାର, ଡାକ୍ତରଖାନା, ପ୍ରେସ, ନୂଆକଚେରି, ଡାକବଙ୍ଗଳା, ଯାଦୁଘର ସେ ବସାଇଥିଲେ । ବାରିପଦାର ଯାଦୁଘର ହେଲା ଓଡ଼ିଶାର ପ୍ରଥମ ମିଉଜିୟମ । ଏଥିରେ ବଇଦାଣିଆ, କୁଳିଅଣା, ଆମସିକରା, ନୂଆବେରି ଆଦି ସ୍ଥାନର ପ୍ରାଚୀନ ଦ୍ରବ୍ୟ / ଅସ୍ତ୍ରଶସ୍ତ୍ରାଦି ଗଚ୍ଛିତ ଥିଲା । ରେଭେନ୍ସା କଲେଜ, କଟକର ପଦାର୍ଥ ବିଜ୍ଞାନ ବିଭାଗର ଗବେଷଣାଗାର ତିଆରିରେ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ ।

ମହାରାଜା ଭୂସଂସ୍କାର ଓ ଜମିଜମା ବନ୍ଦୋବସ୍ତ କରାଇ କୃଷିଜୀବୀମାନଙ୍କର ବିକାଶ କଥା ଚିନ୍ତା କରିଥିଲେ । ପ୍ରଜାମାନଙ୍କୁ ସେ ଜମି ଉପରେ ଦଖଲ ସ୍ୱତ୍ୱ (occupancy right) ପ୍ରଦାନ କରିଥିଲେ । ଅରଣ୍ୟ ଓ ଖଣିଜ ସଂପଦର ଯଥାଯଥ ମୂଲ୍ୟାୟନ ଯୋଗୁଁ ତାଙ୍କ ସମୟରେ ରାଜସ୍ୱ ବୃଦ୍ଧି ଘଟିଥିଲା । ସବୁବର୍ଗର ଲୋକଙ୍କ ହାତକୁ କାମ ଦେବା ପାଇଁ ସେ ଲାଖ, ଟସରଭିତ୍ତିକ କୁଟୀରଶିଳ୍ପର ପ୍ରସାର କରାଇଥିଲେ । ସେ ତତ୍କାଳୀନ ପ୍ରତ୍ନତତ୍ତ୍ୱବିତ୍ ପି.ଏନ.ବୋଷଙ୍କଦ୍ୱାରା ସର୍ବେକ୍ଷଣ କରାଇ ସେ ଖଣିଜ ଦ୍ରବ୍ୟର ଠିକଣା ପାଇଥିଲେ । ତାଙ୍କ ରାଜ୍ୟର ଲୁହାପଥର ଯୋଗାଣରୁ ଟାଟାରେ ଲୌହ ଇସ୍ପାତ୍ କାରଖାନା ସମ୍ଭବ ହୋଇଥିଲା । ଗାଁ ସର୍ଦ୍ଦାର ପ୍ରଥା ଉଚ୍ଛେଦ ଓ ଗ୍ରାମପଞ୍ଚାୟତ ଚିନ୍ତନ ତାଙ୍କ ଶାସନର ପ୍ରମୁଖ କୃତି । ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର ଶାସନପ୍ରଣାଳୀ ଦେଖି ତତ୍କାଳୀନ ଇଂରେଜ ସରକାର ତାଙ୍କୁ ମହାରାଜ ଉପାଧି ଦେଇଥିଲେ ।

ଛଉନୃତ୍ୟକୁ ବିଶ୍ୱବ୍ୟାପୀ କରିବା ପାଇଁ ମହାରାଜା ଅନେକ ଆୟୋଜନ କରିଥିଲେ । ଶିଳ୍ପୀମାନଙ୍କୁ ଦୈନିକ ସୁଷମ ଆହାର ପାଇଁ ସାମଗ୍ରୀ ଓ ଅର୍ଥର ବନ୍ଦୋବସ୍ତ କରାଯାଉଥିଲା । ଛଉନୃତ୍ୟର ପ୍ରଦର୍ଶନର ବ୍ୟବସ୍ଥା ରାଜ୍ୟ ବାହାରେ ସେ କରାଉଥିଲେ । ସନ ୧୯୧୧, ଡିସେମ୍ବର ୧୨ ତାରିଖର କଥା । କଲିକତାରେ ସମ୍ରାଟ ପଞ୍ଚମ ଜର୍ଜ ଓ ସାମ୍ରାଜ୍ଞୀ ମେରୀଙ୍କ ସମ୍ମୁଖରେ ଛଉନୃତ୍ୟର ପ୍ରଦର୍ଶନ ଆୟୋଜନ ମହାରାଜା କରାଇଥିଲେ । ଉପସ୍ଥିତ ଦର୍ଶକମଣ୍ଡଳୀ ତାହାର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ତତ୍କାଳୀନ ସମ୍ବାଦପତ୍ର The statesman ଏଇ ନୃତ୍ୟ ସଂପର୍କରେ ଲେଖିଥିଲେ -"The dance drew universal appreciation, The Oriya Paika dance was a great spectacle".

ମହାରାଜଙ୍କ ପୁତ୍ର ପୂର୍ଣ୍ଣଚନ୍ଦ୍ରଙ୍କ ସମ୍ମାନାର୍ଥେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ରହିଅଛି । ଏହା ଓଡ଼ିଆ ଭାଷାରେ ସବୁଠୁଁ ବଡ଼ ଜ୍ଞାନକୋଷ ବା ଏନ୍‌ସାଇକ୍ଲୋପିଡ଼ିଆ । ସେ ଦିବ୍ୟଂଗତା ରାଣୀଙ୍କ ସ୍ମୃତିରେ ଲକ୍ଷ୍ମୀକୁମାରୀ ଧର୍ମଶାଳ ଓ ରାଣୀବାଗ ପାର୍କ ବସାଇଥିଲେ । ଲକ୍ଷ୍ମୀକୁମାରୀ ଧର୍ମଶାଳା ବସ୍ତୁତଃ ଏକ ପ୍ରକୃଷ୍ଟ ପାନ୍ଥଶାଳା । କନ୍ୟା ଶ୍ରୀପଦ ମଂଜରୀଙ୍କ ସ୍ମୃତିରେ କୁଷ୍ଠାଶ୍ରମ ଓ ସ୍କୁଲ ମଧ୍ୟ ପ୍ରତିଷ୍ଠିତ । କୁଷ୍ଠାଶ୍ରମ ପ୍ରତିଷ୍ଠା ଯୋଗୁଁ ବହୁ ରୋଗୀଙ୍କ ଜୀବନରେ ଆଶା ସଂଚାର ହୋଇପାରିଥିଲା ।

ମଧୁବାବୁ ଥିଲେ ବାରିପଦା ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର ରାଜନୀତିକ ପରାମର୍ଶଦାତା । ତାଙ୍କ କଥାନୁସାରେ ପଣ୍ଡିତ ଗୋପବନ୍ଧୁ ଦାସ ହେଲେ ମୟୂରଭଞ୍ଜ ରାଜ୍ୟର ସରକାରୀ ଓକିଲ । ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର ମହାନ୍ ମର୍ଯ୍ୟାଦାବୋଧ ଓ ପଣ୍ଡିତ ଗୋପବନ୍ଧୁଙ୍କର ସାଧୁତା, ଆତ୍ମତ୍ୟାଗ ଓ ଦେଶପ୍ରୀତିର ମୁଗ୍ଧ ସମ୍ମିଶ୍ରଣରେ ମୟୂରଭଞ୍ଜ ରାଜ୍ୟର ପ୍ରଗତିରଥ ଆଗେଇ ଚାଲିଲା । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଖଣ୍ଡର ଅନୁଧ୍ୟାନ ପାଇଁ ମହାରାଜ ୧୯୧୦ ମଇ ମାସରେ ବିଶ୍ୱଭ୍ରମଣ ନିଷ୍ପତ୍ତି ନେଲେ । ପାଠ ପଢ଼ିଲା ବେଳେ ମଧ୍ୟ ସେ ଦାର୍ଜିଲିଂ ଓ ଶ୍ରୀଲଙ୍କା ଗସ୍ତ କରିଥିଲେ । ଚୀନ୍-ଜାପାନ-ଆମେରିକା-ଇଂଲଣ୍ଡ ଆଦି ଦେଶ ପରିଭ୍ରମଣ କରି ବହୁ ଅଭିଜ୍ଞତା ହାସଲ କରିଥିଲେ । ଇଂଲଣ୍ଡରେ ସେ ତତ୍କାଳୀନ ସମ୍ରାଟ୍, ପାର୍ଲିଆମେଣ୍ଟର ଅନେକ

ସଦସ୍ୟ, ଭାରତ ଶାସନ ନିମନ୍ତେ ଥିବା ସ୍ୱତନ୍ତ୍ର ମନ୍ତ୍ରୀଙ୍କୁ ସାକ୍ଷାତ କରିଥିଲେ। ବିଦେଶ ଭ୍ରମଣ ପୂର୍ବରୁ ତାଙ୍କର ପରମବନ୍ଧୁ ପଣ୍ଡିତ ଗୋପବନ୍ଧୁ ଦାସ ଗୀତଟିଏ ଲେଖିଥିଲେ। ନିମ୍ନରେ ତହିଁରୁ କିଂଚିତ୍ ପ୍ରଦତ୍ତ। ଯଥା-

''ରାମଚନ୍ଦ୍ର ମହାରାଜା ପରଜା ପରାଣଧନ
ଯାଉଛ କେଉଁ ବିଦେଶେ ହେ ଭଞ୍ଜକଂଜ-ତପନ।
ଭୁଲିବ ନାହିଁ ଭୂପାଳ ସରାଳି ଶୁଦ୍ଧ ସଲିଳ
ମେଘାସନ ଚାରୁକୁଂଜ ବୁଢ଼ାବଳଙ୍ଗ ପୁଳିନ।
ଚୋହାଡ଼ ପାହାଡ଼ ଦେଶ ଭୁଲିବ ନାହିଁ ନରେଶ
ଘେନ ଦିବ୍ୟ ଅବଧାନେ ଏ ବିନୀତ ନିବେଦନ।''

ମିଷ୍ଟର ମଧୁସୂଦନ ଦାସ (ମଧୁବାବୁ)ଙ୍କ ପ୍ରତି ମହାରାଜାଙ୍କର ଖୁବ୍ ମର୍ଯ୍ୟାଦାବୋଧ ଥିଲା। ମଧୁବାବୁଙ୍କ ତାରକସୀ କାର୍ଯ୍ୟର ପ୍ରଦର୍ଶନୀ ଦେଖି ଉଚ୍ଚ ପ୍ରଶଂସାପତ୍ର ସେ ଦେଇଥିଲେ। ସେ ମଧ୍ୟ ମହାରାଜାଙ୍କ ଯୋଗ୍ୟତାକୁ ବହୁମାନିତ କରୁଥିଲେ। ସନ ୧୯୦୭ ମସିହା ବେଳେ ବଙ୍ଗ-ବିହାର-ଓଡ଼ିଶା କାଉନସିଲ୍‌ର ଗୋଟିଏ ମନୋନୀତ ସଭ୍ୟପଦ ଶୂନ୍ୟ ପଡ଼ିଥିଲା। ସେ ପଦଟି ପାଇଁ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବଙ୍କୁ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ମନୋନୀତ କରନ୍ତୁ ବୋଲି ମଧୁବାବୁ ମତ ଦେଇଥିଲେ। ସେ ବାବଦରେ ମଧ୍ୟ ସେ ମହାରାଜାଙ୍କୁ ଚିଠି ଲେଖିଥିଲେ। କିନ୍ତୁ ସ୍ୱୟଂ ମହାରାଜ ଭଞ୍ଜଦେଓ ମଧୁବାବୁଙ୍କ ପତ୍ରର ଉତ୍ତରରେ ଲେଖିଥିଲେ କି ଓଡ଼ିଶାରୁ କେହି ଯଦି ନିର୍ବାଚିତ ହେବା ଉଚିତ, ତା' ହେଲେ ସେ ହେଉଛନ୍ତି - ମିଷ୍ଟର ଦାସ। ତାଙ୍କ ପରିବର୍ତ୍ତେ ଅନ୍ୟ କେହି ଏପରିକି ସେ ନିଜେ ସୁଦ୍ଧା କାଉନସିଲ୍‌କୁ ନିର୍ବାଚିତ ହେବା ତାଙ୍କର ବିବେକ-ସମ୍ମତ ଦେଉନାହିଁ। ସେଇ ମର୍ମରେ ମହାରାଜାଙ୍କ ଚିଠିର କିୟତ୍ ଅଂଶ ନିମ୍ନରେ ପ୍ରଦତ୍ତ। ଯଥା:-

"I have read through your letters very carefully and wish to say after giving the matter very careful consideration that it is out of the question for me to stand for the election for the reason (a) that I do not feel competent to discharge the responsibility which a member of the Council ought to take upon himself, (b) that if any man from Orissa is at all to be elected, it is yourself and it is a matter of conscience with me not to countenance the election of any other man, including myself. If I had an easy and accomodating a conscience as unfortunately some of my prominent friends have, it would have been possible for me to stand as a candidate. But the case is otherwise and I must very thankfully and gratefully decline your kind offer. On my return from Cuttack, I mean to stay in Balasore for a few days and you may rest assure that I shall use all the influence over Raja B. N. De Bahadur and others to point out to them the meanness and the shabiness of which they have been guilty and to rescind their ways."

(କୁଳବୃଦ୍ଧ, ପୃ-୬୪)

ଗୁଣୀ-ଜ୍ଞାନୀ-ଉଦାର-ଭଦ୍ରଲୋକଙ୍କୁ ପାଖରେ ବସାଇ ସେମାନଙ୍କଠାରୁ ଉତ୍ତମ ପରାମର୍ଶ ଗ୍ରହଣ କରି ରାଜ୍ୟବାସୀଙ୍କୁ ଅମିୟ-ପ୍ରଶାସନରେ ମୁଗ୍ଧ କରାଉଥିବା ମହାରାଜା ୧୯୧୨ ମସିହା ଫେବୃଆରୀ ୨୨ ତାରିଖରେ ତାଙ୍କର ଦେହାନ୍ତ ହୋଇଯାଇଥିଲା। ଏଥିରେ ସମଗ୍ର ଜନତା ସ୍ତବ୍ଧ ହୋଇଯାଇ ଥିଲେ। ଭକ୍ତକବି ମଧୁସୂଦନ ରାଓ ତିନିଗୋଟି ଉଚ୍ଛ୍ୱାସରେ ୩୨ପଦରେ ତାଙ୍କ ପ୍ରତି ସମ୍ମାନ ଜଣାଇଥିଲେ। ତହିଁରୁ କିଂଚିତ୍ ନିମ୍ନରେ ପ୍ରଦତ୍ତ ଯଥା-

''ଭଞ୍ଜଭୂମିପତି ଶ୍ରୀରାମଚନ୍ଦ୍ର
କୋଟି ହୃଦାକାଶ ପୂର୍ଣ୍ଣିମାଚନ୍ଦ୍ର
କୋଟି ହୃଦୟର ଆଶା-ଆସ୍ୱଦ
ଜୀବଜଗତର ଯଥା ଜଳଦ
କାହିଁ ଗଲେ ମହାବାବୁ ?
ଅକାଳେ ଅକାଣ୍ଡେ ଦୈବଦୁର୍ବିପାକେ
ବିଧୁଙ୍କୁ ଗ୍ରାସିଲା ରାହୁ !
ପୌର୍ଣ୍ଣମାସୀ ଆହା ଅମା ନିଶାରେ
ପରିଣତ କାଳ-ଛାୟା-ପ୍ରସାରେ।
ଘୋଟି ଯାଇଅଛି ଘୋର ଅନ୍ଧାର
କାହିଁ ଗଲା ଜ୍ୟୋତ୍ସ୍ନାମୟ ସଂସାର ?
ଏ କି ଘୋର ବିଡ଼ମ୍ବନା !
କି ଦାରୁଣ ଦାଉ ସାଧିଲୁରେ କାଳ
କି ଦୁରନ୍ତ ତୋ କଳ୍ପନା ! ........''

ସେକ୍‌ଟର - ୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର-୨୧

# ବିପ୍ଳବୀ ଧରଣୀଧର ଭୂୟାଁ

ବଣ ପାହାଡ଼ ଘେରା କେନ୍ଦୁଝର ଜିଲ୍ଲାରେ ମୂଳ ବାସିନ୍ଦା ଭାବେ କେଉଁ ପୁରାତନ କାଳରୁ ଭୂୟାଁ ସମ୍ପ୍ରଦାୟର ଜନଜାତିମାନେ ବାସ କରି ଆସୁଛନ୍ତି । ଭୂୟାଁ ଶବ୍ଦଟିର ମୂଳ ଅକ୍ଷର ଭୂ ଅର୍ଥାତ୍ ଭୂମି । ତେଣୁ ସେମାନେ ନିଜକୁ ଭୂମିପୁତ୍ର ଭାବେ ଦାବୀ କରିଥାଆନ୍ତି । ଭୂୟାଁ ସମ୍ପ୍ରଦାୟର ଲୋକମାନେ ଅତ୍ୟନ୍ତ ଶାନ୍ତ ଓ ସରଳ ସ୍ୱଭାବର । କିନ୍ତୁ ଯେତେବେଳେ ମାଟି ମା' ଉପରେ ଶୋଷଣ ଓ କଷଣର ଭାର ବଢ଼ିଯାଏ ସେମାନଙ୍କ ମଧ୍ୟରେ ବିପ୍ଳବାତ୍ମକ ମନୋଭାବ ଜାଗି ଉଠେ । କେନ୍ଦୁଝର ଭୂୟାଁ ସମ୍ପ୍ରଦାୟର ଜନଜାତି ଅତୀତରେ ବହୁବାର ଅତ୍ୟାଚାରୀ ରାଜା ଓ ଇଂରେଜ ଶାସକଙ୍କ ବିରୁଦ୍ଧରେ ବିପ୍ଳବାତ୍ମକ ପନ୍ଥା ଗ୍ରହଣ କରିଛନ୍ତି, ଯାହାକି କଥିତ ଭାଷାରେ 'ମେଳି' ଭାବେ ଆଦୃତ । ସେ ସମସ୍ତ ମେଳି ମଧ୍ୟରୁ ୧୮୬୮ ମସିହାରେ ସଂଘଟିତ ହୋଇଥିବା 'ରତ୍ନାମେଳି' ଏବଂ ୧୮୯୧ ମସିହାରେ ହୋଇଥିବା 'ଧରଣୀମେଳି' ଓଡ଼ିଶା ଇତିହାସରେ ଲିପିବଦ୍ଧ । ଧରଣୀଧରଙ୍କ ନେତୃତ୍ୱରେ ରାଜତନ୍ତ୍ର ବିରୁଦ୍ଧରେ ହୋଇଥିବା ଏହି ବିପ୍ଳବ ଓଡ଼ିଶା ଇତିହାସରେ ଏକ ରୋମାଞ୍ଚକର ଅଧ୍ୟାୟ ।



୧୮୬୪ ମସିହା ମଇ ୫ ତାରିଖ ଦିନ କେନ୍ଦୁଝରର ଗଡ଼ଜାତର ଏକ ଅଖ୍ୟାତପଲ୍ଲୀ କୁସୁମିତାର ଏକ ଭୂୟାଁ ପରିବାରରେ ଧରଣୀଧର ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଲଇଛଣ ନାୟକ ଓ ମାତାଙ୍କ ନାମ ବାଇଗଣି ଦେବୀ । ସେ ଥିଲେ ପିତାମାତାଙ୍କର କନିଷ୍ଠ ସନ୍ତାନ । ପାଠ ପଢ଼ିବା ପାଇଁ ଧରଣୀଧରଙ୍କ ମନରେ ପ୍ରବଳ ଆଗ୍ରହ ଥିଲା । ବହୁ କଷ୍ଟରେ ସେ ମଧ୍ୟଇଂରାଜୀ ପର୍ଯ୍ୟନ୍ତ ପାଠ ପଢ଼ି ସେହି ଅଞ୍ଚଳର ଜଣେ ଶିକ୍ଷିତ ବ୍ୟକ୍ତି ରୂପେ ମୁଣ୍ଡ ଟେକିଥିଲେ । କ୍ରମେ ଧରଣୀଧର କେନ୍ଦୁଝରର ତତ୍କାଳୀନ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ସୁଦୃଷ୍ଟିକୁ ଆସିଥିଲେ ଏବଂ ଜଣେ ଶିକ୍ଷିତ ଲୋକଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତି କରିବା ପାଇଁ ରାଜା ନିଜ ପ୍ରଚେଷ୍ଟାରେ ଧରଣୀଧରଙ୍କୁ ସର୍ଭେ ପାଠ ପଢ଼ାଇବା ପାଇଁ କଟକ ପଠାଇଥିଲେ । ସେ ଜଣେ ମେଧାବୀ ଛାତ୍ର ହୋଇଥିବାରୁ ଠିକ୍ ସମୟରେ ପାଠପଢ଼ା ଶେଷ କରି କେନ୍ଦୁଝର ଫେରି ଯାଇଥିଲେ ଏବଂ ସେଠାରେ ରାଜା ତାଙ୍କୁ ସର୍ଭେ ଓଭର୍‌ସିଅର ଭାବେ ନିଯୁକ୍ତି ଦେଇଥିଲେ । ନିଜର କର୍ତ୍ତବ୍ୟନିଷ୍ଠା ଏବଂ ସାଧୁତା ବଳରେ ଅଳ୍ପଦିନ ମଧ୍ୟରେ

ଧରଣୀଧର ରାଜା ତଥା ଅନ୍ୟମାନଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ଏ କଥା ରାଜାଙ୍କର ସହକାରୀ ଦେବାନ୍ ବିଚିତ୍ରାନନ୍ଦ ଦାସ ସହ୍ୟ କରିପାରି ନଥିଲେ । କାରଣ ସେ ଥିଲେ ଧରଣୀଧରଙ୍କଠାରୁ କମ୍ ଶିକ୍ଷିତ ଏବଂ କ୍ଷମତାଲୋଭୀ । ଧରଣୀଧରଙ୍କୁ କିପରି ବଦ୍‌ନାମ କରାଯାଇପାରିବ, ଏହା ଥିଲା ବିଚିତ୍ରାନନ୍ଦ ଦାସଙ୍କ ମୁଖ୍ୟ ଉଦ୍ଦେଶ୍ୟ । ଧରଣୀଧରଙ୍କ କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ଦେଖି ବିଚିତ୍ରାନନ୍ଦ ଦାସ କ୍ରୋଧ ଜର୍ଜରିତ ହୋଇ ରହିଥିଲେ ଏବଂ ପ୍ରତିଶୋଧ ନେବା ପାଇଁ ସୁଯୋଗ ଅପେକ୍ଷାରେ ଥିଲେ । ସୁଯୋଗ ଅନୁସନ୍ଧାନରେ ଥିବା ବିଚିତ୍ରାନନ୍ଦ ଦାସଙ୍କ ପାଇଁ ହଠାତ୍ ଏକ ସୁବର୍ଣ୍ଣ ସୁଯୋଗ ପହଞ୍ଚିଲା । କେନ୍ଦୁଝର ଓ ସିଂହଭୂମର ସୀମା ବିବାଦ ସମାଧାନ କରିବା ପାଇଁ ବିଚିତ୍ରାନନ୍ଦଙ୍କ ପରାମର୍ଶରେ କେନ୍ଦୁଝର ରାଜା ଧରଣୀଧରଙ୍କୁ ନିଯୁକ୍ତ କଲେ । ଉକ୍ତ କାର୍ଯ୍ୟ ସମ୍ପାଦନ ପାଇଁ ଧରଣୀଧର ଦୀର୍ଘ ଦିନ ଧରି ରାଜାଙ୍କ ନିକଟରେ ଅନୁପସ୍ଥିତ ରହିଲେ । ଏହାର ସୁଯୋଗ ନେଇ ଧରଣୀଧରଙ୍କ ନାମରେ ବିଚିତ୍ରାନନ୍ଦ ନାନା ପ୍ରକାର ମନଗଢ଼ା ମିଥ୍ୟା ଅଭିଯୋଗ କରି ରାଜାଙ୍କ ମନକୁ ସମ୍ପୂର୍ଣ୍ଣ ବିଷାକ୍ତ କରି ଦେଲେ । ଫଳରେ ଧରଣୀଧର ସୀମା ସର୍ଭେୟର୍ ପଦବୀଟିକୁ ସବୁଦିନ ପାଇଁ ହରାଇଲେ । ଏହା ପରେ ଧରଣୀଧର ୪ ବର୍ଷ ପାଇଁ ମୟୂରଭଞ୍ଜ ରାଜାଙ୍କ ଅଧୀନରେ ଚାକିରି କରିଥିଲେ । ଉକ୍ତ ପଦବୀ ତ୍ୟାଗ କରି ଧରଣୀଧର ଫେରି ଆସିଥିଲେ ନିଜ ଗ୍ରାମ କୁସୁମିତାକୁ । ରାଜା ଏବଂ ରାଜ କର୍ମଚାରୀଙ୍କ ଅତ୍ୟାଚାର ସାଧାରଣ ପ୍ରଜାଙ୍କ ଉପରେ ଦିନକୁ ଦିନ ବଢ଼ି ଚାଲିଥାଏ । ଏସବୁ ଶୁଣି ଓ ଦେଖି ଧରଣୀଧରଙ୍କ ମନରେ ବିଦ୍ରୋହର ବହ୍ନି ଜଳି ଉଠିଲା । ଅତ୍ୟାଚାରର ସର୍ବାଗ୍ରେ ଥିଲା ବେଠି ପ୍ରଥା । ପ୍ରଜାମାନେ ବେଠି ଖଟିବା ସଂଗେସଂଗେ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ମଧ୍ୟ କରାଯାଉଥିଲା । ଧରଣୀଧରଙ୍କ ମନକୁ ଏହା ଭୀଷଣ ଆନ୍ଦୋଳିତ କରିଥିଲା ।

୧୮୯୧ ମସିହାରେ କେନ୍ଦୁଝର ଗଡ଼ର ୧୧ କି.ମି. ଉତ୍ତରକୁ ମାଛକାନ୍ଦଣାଝର ଉପରେ ମାହାରା ନିର୍ମାଣ କରି ଉକ୍ତ ଜଳକୁ ଜଳସେଚନ କାର୍ଯ୍ୟରେ ବ୍ୟବହାର କରିବା ପାଇଁ ରାଜା ୧୦,୦୦୦ ଟଙ୍କା ମଞ୍ଜୁର କରି ଏହି ଦାୟିତ୍ୱ ବିଚିତ୍ରାନନ୍ଦ ଦାସଙ୍କ ଉପରେ ନ୍ୟସ୍ତ କରିଥିଲେ । କିନ୍ତୁ ବିଚିତ୍ରାନନ୍ଦ ଦାସ ସ୍ଥିର କଲେ ଯେ ମାହାରା ନିର୍ମାଣ କରାଯିବ ଭୂୟାଁ ପ୍ରଜାମାନଙ୍କ ବେଠିରେ । ତଦନୁଯାୟୀ ଭୂୟାଁମାନଙ୍କୁ ବାଧ୍ୟ କରାଯାଇ ଉକ୍ତ କାର୍ଯ୍ୟରେ ନିୟୋଜିତ କରାଯାଇଥିଲା ଏବଂ ଅଶେଷ ଶାରୀରିକ ନିର୍ଯ୍ୟାତନା ଦିଆଯାଇଥିଲା । ଏହା ଧରଣୀଧରଙ୍କୁ ଖୁବ୍ ବ୍ୟଥିତ କରିବା ଫଳରେ ଭୂୟାଁମାନଙ୍କୁ ଏକତ୍ରିତ କରି ଧରଣୀଧର ବିଦ୍ରୋହ ପାଇଁ ଆହ୍ୱାନ ଦେଲେ । ତାଙ୍କରି ଆହ୍ୱାନରେ ସହସ୍ର ବାଥୁଡ଼, କୋହ୍ଲ, ଭୂୟାଁ ଓ ସାଉନ୍ତି ଏକତ୍ରିତ ହେଲେ । ବିଦ୍ରୋହର ଅବ୍ୟବହିତ ପୂର୍ବରୁ ଧରଣୀଧର କଟକସ୍ଥିତ କମିଶନର, କଲିକତାସ୍ଥିତ ଇଂରେଜ କର୍ତ୍ତୃପକ୍ଷ ଓ ମୟୂରଭଞ୍ଜ ରାଜ୍ୟର ମ୍ୟାନେଜରଙ୍କୁ ରାଜାଙ୍କ ଅତ୍ୟାଚାର ବିଷୟରେ ଚିଠି ଲେଖି ଅବଗତ କରାଇଥିଲେ । ବିଦ୍ରୋହୀମାନେ ନିଷ୍ପତ୍ତି ନେଇଥିଲେ ଯେ ବିଚିତ୍ରାନନ୍ଦ ଦାସଙ୍କୁ ହତ୍ୟା କରିବେ ଏବଂ ରାଜାଙ୍କୁ ଗାଦିଚ୍ୟୁତ କରିବେ । ବିଦ୍ରୋହ କ୍ରମେ ଭୀଷଣ ଆକାର ଧାରଣ କଲା । ରାଜା ଏବଂ ବିଚିତ୍ରାନନ୍ଦ ଦାସ ଭୟରେ ଆନନ୍ଦପୁର ପଳାୟନ କଲେ । ବିଦ୍ରୋହ ଦମନ କରିବା ପାଇଁ ରାଜା ତାଙ୍କର ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ୍ ରାୟ ନନ୍ଦକିଶୋର ବାହାଦୂର ଏବଂ ମ୍ୟାନେଜର ଫକୀର ମୋହନ ସେନାପତିଙ୍କୁ କମିଶନରଙ୍କ ନିକଟକୁ କଟକ ପ୍ରେରଣ କଲେ । ଫକୀର ମୋହନଙ୍କ ବିଚକ୍ଷଣ ବୁଦ୍ଧି ପ୍ରୟୋଗ ଫଳରେ କମିଶନର ତାଙ୍କ ପ୍ରସ୍ତାବରେ ରାଜି ହେଲେ ଏବଂ ବଙ୍ଗ ସରକାରଙ୍କୁ ଜଣାଇ ଦିଆଯିବାରୁ ବିଦ୍ରୋହ ଦମନ କରିବା ପାଇଁ ସରକାରଙ୍କ ଦ୍ୱାରା ଚାଇଁବସାର ଡେପୁଟୀ କମିଶନର୍ ଏଚ. ଡାଉସନଙ୍କୁ କମିଶନରଙ୍କ ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ୍ ଭାବେ ନିଯୁକ୍ତ କରାଗଲା । ଏ ଖବର ପାଇ ବିଦ୍ରୋହୀମାନେ ଅଧିକ ଉତ୍ତେଜିତ ହେଲେ । ଧରଣୀଧର ଦୃଢ଼ ଭାବେ ନିଜକୁ କେନ୍ଦୁଝରର ଟିକାୟତ ଘୋଷଣା କଲେ ଏବଂ ରାଇସୁଆଁର ଏକ ଆମ୍ବତୋଟା ମଧ୍ୟରେ ଦରବାର ପ୍ରତିଷ୍ଠା କରି ପ୍ରଜାମାନଙ୍କୁ ବିଭିନ୍ନ ଆଦେଶ ଜାରି କଲେ । ତନ୍ମଧ୍ୟରୁ ରାଜାଙ୍କ ଗଡ଼ ଆକ୍ରମଣ କରିବା ପାଇଁ ଯୋଜନା ଅନ୍ୟତମ ଥିଲା । ମାତ୍ର ଫକୀର ମୋହନଙ୍କ ବିଚକ୍ଷଣ କୁଟନୀତି ଯୋଗୁଁ ଗଡ଼ ଆକ୍ରମଣ ଯୋଜନା ପଣ୍ଡ ହୋଇଥିଲା । ସେନାଧ୍ୟକ୍ଷ ଡାଉସନ୍ ଧରଣୀଧର ଓ ଅନ୍ୟାନ୍ୟ ବିଦ୍ରୋହୀମାନଙ୍କୁ ଧରିବା ପାଇଁ ବିଭିନ୍ନ କୌଶଳ ସ୍ଥିର କରି ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇବା ପାଇଁ ଜଣେ ସବ୍-ଇନିସ୍‌ପେକ୍ଟର ଏବଂ ଜଣେ କନେଷ୍ଟବଳଙ୍କୁ ଧରଣୀଧରଙ୍କ ନିକଟକୁ ପଠାଇ ଥିଲେ । ମାତ୍ର ସ୍ୱାଭିମାନର

ମୂର୍ତ୍ତିମନ୍ତ ପ୍ରତୀକ ଧରଣୀଧର ଆତ୍ମସମର୍ପଣ କରିଥାନ୍ତେ ବା କିପରି ? ଡାଉସନ୍‌ଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କୁ ପ୍ରବର୍ତ୍ତା ଗଲା । ବାଟରେ ପୁତୁଲିଆ ଓ ରୁଚିରୀ ନାମକ ଦୁଇଟି ଗ୍ରାମ ମଧ୍ୟରେ ଥିବା ସ୍ଥାନରେ ଡାଉସନ୍ ସାହେବ ତାଙ୍କ ସୈନ୍ୟସାମନ୍ତ ସହ ଆସୁଥିବାର ଦେଖି ଧରଣୀଧର ହାତୀ ପିଠିରୁ ଓହ୍ଲାଇ ତାଙ୍କୁ ସ୍ୱାଗତ ଜଣାଇଲେ । ପୂର୍ବ ଚକ୍ରାନ୍ତ ଅନୁଯାୟୀ ଡାଉସନ୍‌ଙ୍କ ସୈନ୍ୟମାନେ ଧରଣୀଧରଙ୍କୁ ଘେରିଯାଇ ବନ୍ଦୀ କରିଥିଲେ । ଧରଣୀଧର ବନ୍ଦୀ ହୋଇଯିବା ପରେ ତାଙ୍କର ଅନୁଗାମୀମାନେ ହତୋତ୍ସାହିତ ହୋଇ ଯାଇଥିଲେ । ତଥାପି ସେମାନଙ୍କ ମଧ୍ୟରୁ ଅନେକଙ୍କ ରକ୍ତ ଶିଥିଳ ହୋଇ ନଥିଲା । ମାତ୍ର ଇଂରେଜମାନଙ୍କ ପ୍ରଚଣ୍ଡ ଶକ୍ତି ଆଗରେ ବିଦ୍ରୋହୀମାନେ ଅଧିକ କାଳ ତିଷ୍ଠି ପାରି ନଥିଲେ ।

ଶେଷରେ ଆରମ୍ଭ ହୋଇଥିଲା ବିଚାର ପର୍ବ । ୨୮ ଜଣ ବନ୍ଦୀଙ୍କୁ ଭିନ୍ନ ଭିନ୍ନ ସମୟକାଳ ପର୍ଯ୍ୟନ୍ତ କାରାଦଣ୍ଡ ଦିଆଯାଇଥିଲା । ୪୦ ଜଣଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । ଧରଣୀଧରଙ୍କୁ ସାତ ବର୍ଷ ସଶ୍ରମ କାରାଦଣ୍ଡ ଦିଆଯାଇ କଟକ ଜେଲ୍‌ରେ ରଖାଯାଇଥିଲା । ୧୮୯୭ ମସିହାରେ ସେ କାରାମୁକ୍ତ ହୋଇଥିଲେ । କାରାମୁକ୍ତ ହେବା ପରେ ତାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ହୋଇଥିଲା । ସେ ପୁରୀ ସମୁଦ୍ରକୂଳରେ ଥିବା ବାଙ୍କୀ ମୁହାଣରେ ତପସ୍ୟାରତ ହୋଇଥିଲେ । ସେଠାରୁ ୧୯୧୨ ମସିହାରେ କଟକ ଜିଲ୍ଲାର ଆଳି ଅଞ୍ଚଳକୁ ଯାଇ ସେଠାରେ ଏକ ନିକାଞ୍ଚନ ସ୍ଥାନରେ ମଠ ନିର୍ମାଣ କରି ମୃତ୍ୟୁ ପର୍ଯ୍ୟନ୍ତ ଏକନିଷ୍ଠ ସନ୍ନ୍ୟାସ ଜୀବନଯାପନ କରିଥିଲେ । ଶେଷରେ ୧୯୪୪ ମସିହା ମଇ ୧୬ ତାରିଖ ବୈଶାଖ ପୂର୍ଣ୍ଣିମା ଦିନ ଏହି ମହାନ୍ ବିଦ୍ରୋହୀଙ୍କର ମହାପ୍ରୟାଣ ଘଟିଲା ।

ବିପ୍ଳବୀ ଧରଣୀଧର ଅନ୍ୟାୟ ରାଜ ଶାସନ ଓ ଇଂରେଜ ଶାସକଙ୍କ ବିରୁଦ୍ଧରେ ଲଢ଼ି ପରାଭୂତ ହୋଇଥିଲେ ମାତ୍ର ତାଙ୍କର ଦୁଃସାହସିକ ସଂଗ୍ରାମ ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଅବିରତ ଜାରି ରହିଥିଲା । ସେ ଥିଲେ ଜନମାନସର ନେତା । ବିର୍ସାମୁଣ୍ଡା, ରତ୍ନାନାୟକ, ଚକ୍ରା ବିଶୋଇ ପ୍ରମୁଖ ଆଦିବାସୀ ମୁକ୍ତି ଯୋଦ୍ଧାଙ୍କର ସେ ଥିଲେ ଜଣେ ସମକକ୍ଷ ବିପ୍ଳବୀ । ଧରଣୀଧର ଏକ ଚିର ଅମର ଯୁଗ-ପୁରୁଷ ଭାବରେ ଆମର ନିତ୍ୟ ସ୍ମରଣୀୟ । ଏହି ମହାନ୍ ବିପ୍ଳବୀଙ୍କର ମହତ୍ ଆଦର୍ଶ ଯୁଗେ ଯୁଗେ ଏ ଜାତିକୁ ପ୍ରେରଣା ଯୋଗାଉଥିବ ଏହା ନିଃସନ୍ଦେହ ।

